# ପାଟରାଣୀ



ଲେଖକ—

ଶ୍ରୀ ଗୋପାଳ ଚନ୍ଦ୍ର ମିଶ୍ର ଏମ୍. ଏ.



ପ୍ରକାଶିକା :—

ଶ୍ରୀମତୀ କନକ ମଞ୍ଜରୀ ଦେବୀ

ପଲ୍ଲୀ ସୁଷମା ସାହିତ୍ୟ ମନ୍ଦିର

ରଣପୁର ଗଡ଼ (ପୁରୀ)

ପ୍ରଥମ ପ୍ରକାଶ

ପ୍ରାପ୍ତିସ୍ଥାନ :—

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ-୨

ଓ କଟକର ଅନ୍ୟାନ୍ୟ ବହି ଦୋକାନ ।

—ଏକଟଙ୍କା ଦଶଅଣା ମାତ୍ର—

ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନଙ୍କୁ

ଶ୍ରଦ୍ଧା-ନିବେଦନ

# ସ୍ୱାଗତ

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପ୍ରାରମ୍ଭରେ ଖୋର୍ଦ୍ଧାର ପାଇକ ବିଦ୍ରୋହ ଓଡ଼ିଆ ଜାତିର କାହାଣୀର ଏକ ଜ୍ୱଳନ୍ତ ସଙ୍କେତ । ବାଣପୁରର ସାହସୀ ଯୁବକ କୃତ୍ତିବାସ ପାଟଶାଣୀ ଏହି ବିଦ୍ରୋହର ଅନ୍ୟତମ ନେତା ରୂପେ ଇଂରେଜ ବିରୁଦ୍ଧରେ ଲଢ଼ି ଆଜୀବନ ଦ୍ୱୀପାନ୍ତର ଦଣ୍ଡ ଭୋଗିଥିଲେ । କବିକଳ୍ପନା ଅତୀତ ଗର୍ଭରୁ ସେହି ଗୌରବମୟ ଘଟଣାବଳୀକୁ ଆଜି ଓଟାରି ଆଣିଛି ।

ସ୍ୱାଧୀନତାର ପରବର୍ତ୍ତୀ ସାହିତ୍ୟ କ୍ଷେତ୍ରରେ "ପାଟଶାଣୀ" ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଛି ଏବଂ ଓଡ଼ିଆ କବିଙ୍କର ଦୃଷ୍ଟି ଭଙ୍ଗୀରେ ନୂତନତା ଆଣିପାରିଛି ବୋଲି ମନେ ହୁଏ । କାରଣ ଇଂରେଜ ସରକାର ସମୟରେ ଏହି ଘଟଣା ଉପରେ କବିକଳ୍ପନା ଏତେ ସ୍ୱଚ୍ଛନ୍ଦ ଓ ମୁକ୍ତ ହୋଇପାରନ୍ତା ନାହିଁ ।

ଫିରିଙ୍ଗି ବିଧ୍ୱସ୍ତ ହେବେ ଦେଶ ମାତୃକାରୁ
କମ୍ପୁକ ହୋଇବ ଦୂର କେଶରୀ ଗୁହାରୁ

୧୯୪୭ ମସିହା ପୂର୍ବରୁ ଏଭଳି ଗୋଟିଏ ପଦ ଲେଖିବା ପାଇଁ କବିଙ୍କୁ ରାଜଦଣ୍ଡ ଭୋଗିବାକୁ ପଡ଼ିଥାନ୍ତା ।

ଐତିହାସିକ ବିଦ୍ରୋହ ଏବଂ ବିଦ୍ରୋହୀ ଚରିତ୍ରକୁ ବିଷୟ ବସ୍ତୁରୂପେ ଗ୍ରହଣ କରିବା କାବ୍ୟ ସୃଷ୍ଟିର ଆଜି ଏକ ଶୁଭଲକ୍ଷଣ । "ପାଟଶାଣୀ"ର କବି ନିଜ କାବ୍ୟର ବିଷୟ ନିର୍ବାଚନରେ ଏହି ସହଜ ସତ୍ୟଟିକୁ ଗ୍ରହଣ କରିଛନ୍ତି ।

ବିଷୟ ବର୍ଣ୍ଣନା ଭାଷା, ଛନ୍ଦ ଓ କବିତ୍ୱର ଯଥାଯଥ ବିଚାର ପାଇଁ ଏଠାରେ ସ୍ଥାନର ଅଭାବ । ତଥାପି 'ପାଟଶାଣୀ'ର ଯେଉଁ ପୃଷ୍ଠା ଉପରେ ଆଖି ପଡ଼େ ସେଠାରେ ଆନନ୍ଦ ଓ କୌତୂହଳ ଜାତହୁଏ ।

ଫିରିଙ୍ଗିମାନଙ୍କୁ ତଡ଼ିବାପାଇଁ ପାଟଣାଣୀ, ଦେଶମୟ ଯେଉଁ ବିପ୍ଳବ ଉତ୍ତେଜନା ଖେଳାଇ ଦେଇଛନ୍ତି ସେଥିସଙ୍ଗେ ପାଇକ-ମାନଙ୍କର ଉତ୍ସାହ ଓ ପ୍ରାଣମୂର୍ଚ୍ଛା ଲଢ଼େଇର ବର୍ଣ୍ଣନା ପଢ଼ି ପାଠକ ପ୍ରାଣରେ ନବ ନବ ପ୍ରେରଣା ଜାତହୁଏ ।

ଅଶ୍ରୁ ଅବହେଳନେ ତାହାଁ ଅଶୁଭ ସନ୍ତାପସୁ,
ପାଟରାଣୀ କୂଳପନ୍ତି ଅବର୍ତ୍ତ ପତ୍ନୀପୁ ।

ବୀରଙ୍କ ସଙ୍ଗେ ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା ମଧ୍ୟ କାବ୍ୟକୁ ସରସ ଓ ସୁଖପାଠ୍ୟ କରିଛି ।

ଅପସରିଯାଏ ତମିସ୍ରା ଗୁହାଁ ଗୃହୁ ପଲ୍ଲବ
ଅପସରି ଯାଏ ଯୌବନ ଦେଖି ଗୁଣୀ ମୂଳକେ ।
ଗୋଟିଏ ଗୋଲାପ ରଙ୍ଗିମା ବୃନ୍ତେ ବନ୍ଧୁ କି ଭଷା
ଚଲିବା ବନ୍ଦିତ ମୂକୁରେ ଦେଖେ ଲାବଣ୍ୟ ଭୂଷା ।

ଶେଷରେ ପାଟରାଣୀ ବନ୍ଦୀହୋଇ ସ୍ଵଦେଶକୁ ବିଦାୟ ଦେଉଛନ୍ତି । ସେ ବର୍ଣ୍ଣନା ପାଠକଲେ ଚକ୍ଷୁରୁ ଲୋତକ ପୋଛିବାକୁ ହୁଏ । ପୁଣି କଳାପାଣିର ବର୍ଣ୍ଣନା ଅଧିକ ଦୁଃଖପ୍ରଦ ଓ ଭୟାବହ । କିନ୍ତୁ ସକଳ ଶୋଚନୀୟ ପରିଣତି ମଧ୍ୟରେ ବିପ୍ଳବୀର ଜୀବନ ଛନ୍ଦ ହଜିଇପାରେ ନାହିଁ ।

କଳାପାଣି ତମିରେ ହୋଇ ଅବନ୍ଧ
ବିପ୍ଳବୀ ଜୀବନ କି ହସାଏ ଛନ୍ଦ ।

କାବ୍ୟର ପାଠ ଶେଷ କଲାବେଳେ ମନେହୁଏ ଆଜି ମଧ୍ୟ ସେସବୁ ବିପ୍ଳବୀ ଓଡ଼ିଆର ଟୀକା ପାଟରାଣୀ ପୂର୍ବକ କଳାପାଣି ଦ୍ଵୀପରେ ଅପେକ୍ଷାକରି ରହିଛନ୍ତି । କବି ଶ୍ରୀ ଗୋପାଳ ଚନ୍ଦ୍ର ତାହାଙ୍କୁ ଅଭିନନ୍ଦନ ଜଣାଇ ନିଜେ ମଧ୍ୟ ଅଭିନନ୍ଦିତ ହୋଇଛନ୍ତି ।

**କାଳିନ୍ଦୀ ଚରଣ ପାଣିଗ୍ରାହୀ**

କଟକ
୧।୭ ।୧୯୫୧

'ପାଟଣାଣୀ' କାବ୍ୟଟି ପଢ଼ି ଅତ୍ୟନ୍ତ ପ୍ରୀତ ହେଲି। ଓଡ଼ିଶାର ପାଇକ ବିଦ୍ରୋହ ପାଇକ ବୀରଙ୍କର ରକ୍ତରେ ଲେଖା। 'ପାଟଣାଣୀ' କାବ୍ୟ ତହିଁର ଆଲେଖ୍ୟ। ଅତ୍ୟନ୍ତ ସୁଖର ବିଷୟ ଶ୍ରୀମାନ୍ **ଗୋପାଳ ଚନ୍ଦ୍ର** ବିଭିନ୍ନ ଛନ୍ଦ ବଗରେ ପାଟଣାଣୀଙ୍କର ଗୌରବବାହ୍ନ ଗାଥାକୁ ଲିପିବଦ୍ଧ କରିଛନ୍ତି। ଭାଷା ଅତି ସରଳ ଏବଂ ସୁଖପାଠ୍ୟ। ପ୍ରକୃତି ବର୍ଣ୍ଣନା **ଅତି ଉପଭୋଗ୍ୟ ହୋଇଛି, ଏବଂ** ହୃଦୟସ୍ପର୍ଶୀ ମଧ୍ୟ।

"ଅଶୋକ ସ୍ତବକେ ଆନତ ବୃକ୍ଷ ଦୃଶ୍ୟ ମଞ୍ଜୁଳ
ବନବଧୂ ଗଭି ସାଜେ କି ନାଗେଶ୍ୱର ମୁକୁଳ।"

'ଚିଲିକା' ମଧ୍ୟ ଏହି କାବ୍ୟଟିରେ ସ୍ଥାନେ ସ୍ଥାନେ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି।

ପାଟଣାଣୀ ଆଧୁନିକ ସାହିତ୍ୟରେ ଏକ ଶ୍ରେଷ୍ଠସ୍ଥାନ ଅଧିକାର କରିବ।

ସ୍ୱା-ଡକ୍ଟର **ଶ୍ରୀ କରୁଣାକର କର**

+ + + + +

"ଚନ୍ଦନ ହଜୁରୀ"ଙ୍କ ସ୍ମୃତି ତ ଲିଭି ଯାଇଛି। ମାତ୍ର ଅତି ସୁଖର କଥା କବି ବନ୍ଧୁ "ପାଟଣାଣୀ"ଙ୍କ ସ୍ମୃତିକୁ ପୁଣି କାବ୍ୟରେ ଜୀବନ୍ତ କରିପାରିଛନ୍ତି। କାବ୍ୟଟି ପଢ଼ୁ ପଢ଼ୁ ପାଠକ ଆତ୍ମହରା ହୋଇ ପଡ଼େ।

**ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ**

୪ ୭-୬୧ କଳିଙ୍ଗ ଭାରତୀ

+ + + + +

ଦେଶମାତାର ଉଦ୍ଧାର ଲାଗି ଓଡ଼ିଶାର ଜୟୀ ରାଜଗୁରୁ, ବୃନ୍ଦୀ-ଖୃଣ୍ଟିଆ, ଜଗବନ୍ଧୁ ବିଦ୍ୟାଧର ପ୍ରଭୃତି ପ୍ରାଣପାତ କରିଥିଲେ। ଏମାନଙ୍କ ବିଷୟରେ ମଧ୍ୟ ଭାରତ ଇତିହାସ ନୀରବ। ଏମାନଙ୍କ ଛଡ଼ା

ଅଜ କେତେ ଐତିହାସିକ ବସ୍ତୁ ତାର ଗର୍ଭରେ ନିମ୍ନ, କିଏ ଜାଣେ ?
ବାଣପୁର ଅଞ୍ଚଳରେ କ୍ରୀଡ଼ାଦାସ ପାଟଶାଣୀ ଏବଂ ... ଖ ... ଗ୍ରନ୍ଥରେ
ରହିଅଛନ୍ତି । ସେହି ଜନଶ୍ରୁତିକୁ କାବ୍ୟ ଆକାରରେ ସଂସ୍ଥାପିତ କରି
ଧନ୍ୟବାଦାର୍ହ ହୋଇଅଛନ୍ତି ।

ଖାଁଦ୍ଧ କଲେଜ — ଶ୍ରୀଧର ଦାସ
୪।୭।୬୧

\+ + + + +

"ଦୈନିକ ଆଶା"ର ସମ୍ପାଦକ ଥିବା କାଳରେ ମୁଁ ତହିଁରେ ଅଧ୍ୟାପକ ଶ୍ରୀ ଗୋପାଳଚନ୍ଦ୍ର ମିଶ୍ରଙ୍କ ଦ୍ୱାରା ରଚିତ "ପାଟଶାଣୀ" କାବ୍ୟଟିକୁ ଧାରାବାହିକ ଭାବରେ ପ୍ରକାଶ କରିବାର ସୁଯୋଗ ପାଇଥିଲି । ପତ୍ରିକାର ପାଠକମାନଙ୍କ ମଧ୍ୟରେ ସୁଦ୍ଧା ଏହି କାବ୍ୟ ପ୍ରତି ଶ୍ରଦ୍ଧା ଓ ଆଗ୍ରହ ଉପୁଜିଥିବାର ସୂଚନା ମୋତେ ମିଳିଥିଲା । ଅଧ୍ୟାପକ ମହାଶୟ ଇତିମଧ୍ୟରେ ଓଡ଼ିଆ ସାହିତ୍ୟ-ରାଜ୍ୟରେ ସ୍ଥାୟୀ ଆସନ ଲାଭ କରିପାରିଛନ୍ତି ଏବଂ "ପାଟଶାଣୀ" ସେହି ଆସନକୁ ଯେ ଆହୁରି ସୁଦୃଢ଼ କରିବ, ଏଥିରେ ସନ୍ଦେହ ନାହିଁ । ଭାଷାର ଲାଳିତ୍ୟ, ଭାବର ମୂର୍ଚ୍ଛନା ଓ ବିଭିନ୍ନ ରାଗ-ରାଗିଣୀର ସମନ୍ୱୟରେ କବି କାବ୍ୟଖଣ୍ଡିକୁ ମନୋରମ ଓ ହୃଦୟସ୍ପର୍ଶୀ କରାଇବାରେ ସକ୍ଷମ ହୋଇଛନ୍ତି । ଓଡ଼ିଶାର ସୁଦୂର ଅତୀତର ଏକ ଗୌରବଦୀପ୍ତ ଲୁପ୍ତ ଅଧ୍ୟାୟର ଉଦ୍‌ଘାଟନ କରିବାକୁ ଯାଇ କବି ଇତିହାସର ଧାରା ଅନୁସରଣ ନକରି ଅନେକ ସ୍ଥଳରେ କଳ୍ପନାର ଆଶ୍ରୟ ନେବାକୁ ବାଧ୍ୟ ହୋଇଛନ୍ତି । ସାହିତ୍ୟ 'ପାଟଶାଣୀ' ଭଳି ଏକ ଦୁର୍ଲ୍ଲଭ କାବ୍ୟ ଲାଭକରି ମହିମା-ମଣ୍ଡିତ ହୋଇଛି । କବିଙ୍କ ଲେଖନୀରେ ପୁଷ୍ପବୃଷ୍ଟି ହେଉ ।

**ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି**

୬।୭।୬୧ — ଭୂତପୂର୍ବ ସଂପାଦକ 'ଦୈନିକ ଆଶା'

# ମୁଖବନ୍ଧ

ଇଂରେଜମାନେ ମରହଟ୍ଟାଙ୍କଠାରୁ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ପାଇଲେ । ମାତ୍ର ସ୍ୱାଧୀନତା ପ୍ରିୟ ଓଡ଼ିଆଙ୍କୁ ବଶୀଭୂତ କରିବାପାଇଁ ଇଂରେଜମାନଙ୍କୁ କମ ଆୟାସ ସ୍ୱୀକାର କରିବାକୁ ପଡ଼ି ନଥିଲା । ବିଶେଷତଃ ଖୋର୍ଦ୍ଧାର ପାଇକମାନେ ଇଂରେଜ ସରକାର ତଥା ସରକାରୀ କର୍ମଚାରୀମାନଙ୍କର ଅତ୍ୟାଚାର ଓ ଦମନ ନୀତିକୁ ନତମସ୍ତକରେ ଗ୍ରହଣ କରି ନେବାକୁ ପ୍ରସ୍ତୁତ ନ ଥିଲେ । ଇଂରେଜ ଶାସନରେ ସେମାନେ ପୁରୁଷାନୁକ୍ରମିକ ସୁବିଧାରୁ ବଞ୍ଚିତ ହୋଇ ପାଇକର ବାହୁବଳ ଉପରେ ନିର୍ଭର କଲେ । ସମଗ୍ର ଓଡ଼ିଶାରେ ସେତେବେଳେ ଅଶାନ୍ତି କୁହୁଳୁଥିଲା । ବିଦ୍ରୋହ ଦ୍ୱାରା ନିଜ ଅଧିକାର ଫେରି ପାଇବାକୁ ସେମାନେ ଦୃଢ଼ପରିକର ହେଲେ ।

୧୮୧୭ ମସିହା ମାର୍ଚ୍ଚ ମାସରେ ଏହି ବିଦ୍ରୋହ ବହ୍ନିର ପ୍ରଥମ ସ୍ଫୁଲିଙ୍ଗ ଦେଖାଦେଲା ଘୁମୁସର ଅଞ୍ଚଳର କନ୍ଧମାନଙ୍କ ମଧ୍ୟରେ । ସେମାନେ ଖୋର୍ଦ୍ଧାର ପାଇକ ମାନଙ୍କ ସହିତ ମିଳି ବାଣପୁର ଆଡ଼କୁ ଅଗ୍ରସର ହେଲେ । ବାଣପୁର ଥାନାରେ ସରକାରୀ ଗୃହସବୁ ଧ୍ୱଂସକରି ସେମାନେ ଖଜଣାଖାନା ଲୁଟି କରିନେଲେ ଓ ସରକାରୀ କର୍ମଚାରୀମାନଙ୍କୁ ହତ୍ୟାକଲେ । ସମଗ୍ର ଖୋର୍ଦ୍ଧାରେ ବିଦ୍ରୋହାନଳ ବ୍ୟାପିଗଲା । ପୁରୀ ଓ କଟକଜିଲାର ପାଇକମାନେ ମଧ୍ୟ ଏହି ବିଦ୍ରୋହରେ ଯୋଗ ଦେଲେ । ପୁରୀଜିଲାର ଗଙ୍ଗପଡ଼ା, ପିପିଲି, ଖୋର୍ଦ୍ଧା, ବାଲକାଟି ଗୋପ ପ୍ରଭୃତି ଓ କଟକଜିଲାର କନିକା, କୁଜଙ୍ଗ, ପାରାଦ୍ୱୀପ, ହରିହରପୁର, ଅସୁରେଶ୍ୱର ପ୍ରଭୃତି ସ୍ଥାନରେ ପାଇକମାନେ

ଏପରି ବିଜୟ ଲାଭକଲେ ଯେ ଅନେକେ ଇଂରେଜସ୍ୱାଜ୍ୟ ଶେଷହେଲା ବୋଲି ମନେ କଲେ । ଖୋର୍ଦ୍ଧାର ରାଜା ମୁକୁନ୍ଦ ଦେବ (ଦ୍ୱିତୀୟ) କୁଜଙ୍ଗ ଓ କନିକାର ରାଜାମାନେ ମଧ୍ୟ ପାଇକମାନଙ୍କର ସହାୟତା କଲେ ମାତ୍ର ଭାଗ୍ୟଦେବତା ପାଇକମାନଙ୍କ ପ୍ରତି ପ୍ରସନ୍ନ ହେଲେ ନାହିଁ । ଅଳ୍ପଦିନ ମଧ୍ୟରେ ଇଂରେଜମାନେ ଅପହୃତ ସ୍ଥାନସବୁ ପୁନରୁଦ୍ଧାର କରିନେଲେ । ଇଂରେଜ ଶାସନର କଣ୍ଟକରୂପୀ ପାଇକମାନଙ୍କୁ ଧ୍ୱଂସ କରିବା-ପାଇଁ ନାନା ଉପାୟ କରାଗଲା । ଦଳେ ସୈନ୍ୟ ପଳାତକ ପାଇକ ନେତାମାନଙ୍କୁ ଧରିବାରେ ନିଯୁକ୍ତ ହେଲେ । ଉତ୍କଳ ସେନାପତିଙ୍କ ବଂଶଧର ବକ୍ସି ଜଗବନ୍ଧୁଙ୍କୁ ପ୍ରକାଶ୍ୟ ସ୍ଥାନରେ ଖୋର୍ଦ୍ଧାରେ ଫାଶିଦିଆଗଲା । କେତେ ପାଇକ ଧୃତହୋଇ ବିଚାରରେ ପ୍ରାଣଦଣ୍ଡ ଦ୍ୱୀପାନ୍ତର ବା କାରାଦଣ୍ଡ ପାଇଲେ । ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ମୁକୁନ୍ଦଦେବ ମଧ୍ୟ ବନ୍ଦୀହେଲେ ।

ପାଇକ ବିଦ୍ରୋହ ଓଡ଼ିଶା ଇତିହାସର ଗୋଟିଏ ଅତି ଗୌରବମୟ ଅଧ୍ୟାୟ । ଏହି ବିଦ୍ରୋହାନଳରେ ଯେଉଁସବୁ ଦେଶପ୍ରେମୀ ବୀର ପୁରୁଷ ପତଙ୍ଗପରି ଲମ୍ଫପ୍ରଦାନ କରିଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ନାମ ଇତିହାସ ଲିପିବଦ୍ଧକରି ନାହିଁ । କିନ୍ତୁ ଜନଶ୍ରୁତି ସିପାହୀ ବିଦ୍ରୋହର ଚନ୍ଦନହଜୁରୀଙ୍କ ପରି କେତେକଙ୍କର ସ୍ମୃତି ରକ୍ଷାକରି ଆସିଅଛି । ଦମୁସରର କନ୍ଧନେତା ଲୋଚନା ସର୍ଦ୍ଦାର, ବାଣପୁରର କୃତ୍ତିବାସ ପାଠଶାଣି,'ଫତୁରିଆ' ରାଜା ପଞ୍ଝିଆ ଏବେ ମଧ୍ୟ ଲୋକମୁଖରେ ଶୁଣାଯାନ୍ତି । କିମ୍ବଦନ୍ତୀ କହେ ଯେ କୃତ୍ତିବାସ ନିଜଶ୍ୱଶୁରଙ୍କ ଷଡ଼ଯନ୍ତ୍ର ଫଳରେ ଇଂରେଜ ସରକାରଙ୍କଦ୍ୱାରା ବନ୍ଦୀହୋଇ ଆନ୍ଦାମାନକୁ ପ୍ରେରିତ ହୋଇଥିଲେ ।

ସେଠାରେ କାରାଗାରରେ ମଧ ସେ ସ୍ୱାଧୀନ ଉତ୍କଳର ସ୍ୱପ୍ନ ଦେଖୁଥିଲେ । ଜଣେ ଉଚ୍ଚ-ରାଜ କର୍ମଚାରୀଙ୍କୁ ସାହାଯ୍ୟ କରିଥିବାରୁ ତାଙ୍କୁ ମୁକ୍ତ ଦିଆଯିବାର ପ୍ରସ୍ତାବ ହୋଇଥିଲା । କିନ୍ତୁ ସେ ବିଦେଶୀଙ୍କ ସନ ଶୃଙ୍ଖଳିତ ସ୍ୱଦେଶକୁ ଫେରିବାକୁ ଇଚ୍ଛୁକ ନଥିଲେ । ତେଣୁ ସେ ମାଗିଥିଲେ—ତାଙ୍କର ପୂର୍ବ ଅସ୍ତ୍ରାଗାର ଓ ଦେଶଦ୍ରୋହୀ ଶ୍ୱଶୁରଙ୍କର ମସ୍ତକ । ଅବଶ୍ୟ ତାଙ୍କର ପ୍ରାର୍ଥନା ପୂରଣ ହୋଇ ନଥିଲା । କୃତ୍ତିବାସଙ୍କ ସ୍ୱପ୍ନ ବାସ୍ତବତାରେ ପରିଣତ ହେଲା ନାହିଁ । ସୁଦୂର ଦ୍ୱୀପର ନିର୍ଜନ କାରାରେ ତାଙ୍କର ଜୀବନଦୀପ ନିର୍ବାପିତ ହେଲା ।

ବାଣପୁରରେ ଅଧ୍ୟୟନ ବେଳେ ଲେଖକ ଏହି କିମ୍ବଦନ୍ତୀ ଶୁଣିବାକୁ ପାଇଥିଲା । ତାକୁ ଭିତ୍ତିକରି କଳ୍ପନାର ଆଶ୍ରୟରେ କାବ୍ୟଟି ଲେଖା ଯାଇଛି । ମହାପୁରୁଷ କୃତ୍ତିବାସଙ୍କର ଚରିତ୍ରର ମହାତ୍ମ୍ୟ ପ୍ରକଟନ କରିବା ଦିଗରେ ଏହି କାବ୍ୟଟି ଲେଖକର କ୍ଷୀଣପ୍ରୟାସ ।

ଏହା 'ଦୈନିକ ଆଶା'ର ବିଭିନ୍ନ ସଂଖ୍ୟାରେ କ୍ରମଶଃ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ କେତେକ ପରିବର୍ତ୍ତନ ସହ ପୁସ୍ତକ ଆକାରରେ ପ୍ରକାଶ କରାଗଲା । ଏଥିରେ କେତେକ ମୁଦ୍ରଣଗତ ତ୍ରୁଟି ରହିଯାଇଅଛି । ସେଥିପାଇଁ ପାଠକ ପାଠିକାଙ୍କ ନିକଟରେ କ୍ଷମା ମାଗୁଅଛି । ପରିଶେଷରେ ଲକ୍ଷ୍ମୀଧର ଏହାର ସଂକଳନରେ ବିଶେଷ ସାହାଯ୍ୟ କରିଅଛି ।

କୁମାର ପୂର୍ଣ୍ଣିମା
୧୫ । ୧୦ । ୧୯୫୧
ଭାରତୀଭବନ, କଟକ

ଲେଖକ

# ପାଟଣାଣୀ

## ପ୍ରଥମ ସର୍ଗ

ପ୍ରାଚୀନ ବଙ୍କାଡ଼ (୧) ଗଡ଼ ବିସ୍ତୃତ ବିଶାଳ
ଅଭେଦ୍ୟ ବନ୍ଧୁର ଭୂମି ପର୍ବତ ବୃକ୍ଷାଳ ।
ବିରାଟ ବଙ୍କାଡ଼ ଗଡ଼ ଦୁର୍ଭେଦ୍ୟ ଅଚ୍ଛିନ୍ନ
ବିକ୍ରମୀ ପାଇକ ଯୋଦ୍ଧା-ସୃଜକ ପ୍ରାଚୀନ ।
କୁଳିଶୁଁ ସୁଦୃଢ଼ ଯା'ର କଠିନ ମେଖଳା
ବିପିନ ଭୂଧର ମାଳା, ନିର୍ଝର ଉଚ୍ଛୁଳା ।

---

(୧) ବଙ୍କାଡ଼—ବାଣପୁରର ଅତି ପ୍ରାଚୀନ ରାଜଧାନୀ । ବାଣପୁର ପ୍ରାଚୀନ ବଙ୍କୋଡ଼ ରାଜ୍ୟରେ ଅବସ୍ଥିତ । ଏଠାରେ ଅତି ପୁରାତନ ଦୁର୍ଗର ଭଗ୍ନାବଶେଷ ଦେଖାଯାଏ ।

ପ୍ରକୃତି ଗୌରବେ ଯା’ର ଭୂମି କାଳେ କାଳେ
ଧନ୍ୟଗଣ୍ୟ ଇନ୍ଦ୍ରନୀଳ କାନ୍ତି ଶୃଙ୍ଗମାଳେ ।
ବନ ପ୍ରକୃତିର ପ୍ରାକୃତିକ ବ୍ୟୂହେ ଦୃଢ଼
ଶିଖରେ ଜଳଦ ଯହିଁ ଆମୋଦେ ଆରୂଢ଼ ।
ଗୁଳ୍ମବନ ତୃଣଲତା କଣ୍ଟକାଚ୍ଛାଦିତ
କୁଟିଳ ପାହାଡ଼ ବାଙ୍କୁ ବାଙ୍କେ ବକ୍ଷସ୍ଥିତ ।
ଅକ୍ଷୟ ଶ୍ୟାମଳ ଦୀପ୍ତି ସବୁଜ ବିକାଶ
ସୁରଭି ଦେବତା ଯୋଗ୍ୟ କୁସୁମ ସଙ୍କାଶ ।
ଯେ ଭୂମି ନିରତ ଲୀଳା ବନ ଲକ୍ଷ୍ମୀଙ୍କର
ହରିତ ପ୍ରାଚୁର୍ଯ୍ୟେ ସୁସମ୍ପଦେ ମନୋହର ।
ବଙ୍କାଡ଼ ଦୁର୍ଗର ଶିରେ ମୁକୁଟ ଆକାର
ଉତ୍‌ଥିତ ନଗାଧିରାଜ, ବିହଗ—ବିହାର ।
ଇନ୍ଦ୍ରଧନୁ କାନ୍ତ ଧ୍ୱାନ୍ତ ବିଶାଳ ସୋଲରୀ(୨)
ଭୂଧର ଭଲେରୀ(୩) ଭଲ, କାଂକଣ ଶିଖରୀ(୪) ।
ଗୁଳ୍ମେ ତୃଣେ ତରଙ୍ଗିତ ଜଟିଳ ଜଟିଆ (୫)
ବଙ୍କାଡ଼ ଦୁର୍ଗର କୁଞ୍ଜେ ନିମଗ୍ନ ନାଟୁଆ ।

---

(୨) ସୋଲରୀ ପର୍ବତ ବାଣପୁର ଥାନାରେ ଅବସ୍ଥିତ ।

(୩) ଭଲେରୀ ପର୍ବତ ବାଣପୁର ନିକଟରେ ଚିଲିକା କୂଳରେ ।

(୪) କାଙ୍କଣ ଶିଖରୀ—ଚିଲିକା ତଟବର୍ତ୍ତୀ ପାହାଡ଼ । ଏଠାରେ ପ୍ରଚୁର କାଙ୍କଣ ଜନ୍ମେ ।

(୫) ଜଟିଆ—ଗୋଟିଏ ପାହାଡ଼ର ନାମ । ଏହା ଚିଲିକା ପଡ଼ରଭିତ୍ତି ପଡ଼ି ଯାଇଛି ।

ବିଦ୍ରୋହୀ ପାଇକ ପ୍ରତିଶୋଧୀ ଖଡ୍‌ଗେ ହଣା
ବଙ୍କାଡ଼ ବଙ୍କିମ ଦକ୍ଷେ ପ୍ରଜେ ଖଣ୍ଡାହଣା(୭) ।
ଦୁର୍ଦ୍ଧର୍ଷ ପାଇକ ବସ୍ତି, ପାଇକ ଅଞ୍ଚଳ
ବୀରର ସଂକଳ୍ପେ ଯା'ର ଭୂଖଣ୍ଡ ଅଟଳ ।
ବୀରତ୍ୱ ପିପାସା ଯହିଁ, ଆହବ-ତଟିନୀ
ପାଷାଣ କଠିନ ଦୃଢ଼ ଯା'ଯୋଦ୍ଧା ବାହିନୀ ।
ନିଭୃତ ପର୍ବତ ଖୋଲ ବିପ୍ଳବୀ ଶିବିର
ଶିବିରେ ରକ୍ଷିତ ନିତ୍ୟ ବର୍ଚ୍ଛା ଧନୁ ତୀର ।
ଅଷ୍ଟାଦଶ ଶତ ସପ୍ତଦଶ ସମ୍ବତ୍ସର
ଯେ ସାଲେ ବିଦ୍ରୋହ ହେଲା, ଇଂରେଜ ସଙ୍ଗର ।
ଯେ ସାଲେ ଖୋରଧା, ବାଣପୁର, ଘୁମୁସରେ
ବିପ୍ଳବ ସ୍ଫୁଲିଙ୍ଗ ପ୍ରଜ୍ୱଳିତ ଦୁର୍ଗ ପରେ ।
କନ୍ଧ ପାଇକର ମେଳି, ଦ୍ରୋହ ସଂଘଟିତ
ଅଗ୍ନି-ରକ୍ତପାତ ହେଲା ଯୁଦ୍ଧ ସଂଗଠିତ ।
ସେ ଭୂଇଁ ବିପ୍ଳବ ଯୁଦ୍ଧ ଯୋଦ୍ଧା ଶିରୋମଣି
ସଂଗ୍ରାମ କେଶରୀ କୃତ୍ତିବାସ ପାଟଶାଣୀ ।
ପାଇକ ନାୟକ ବୃନ୍ଦେ ମଉଳି ଯେ ରଥୀ,
ସେନା-ସେନାପତି ମଧ୍ୟେ ଦୃପ୍ତ ଯା'ର ଗତି ।
ଅତି ଭୟାବହ ଆଦ୍ୟ ଇଂରେଜ ଶାସନ
ଦେଶେ ଦେଶେ ଅତ୍ୟାଚାର ବିଷାକ୍ତ ଦମନ ।
ରାଜ୍ୟ ଗ୍ରାସ, ରାଜ୍ୟ ଧ୍ୱଂସ, କୂଟ ଆକ୍ରମଣ
ଘରେ ଘରେ ଷଡ଼ଯନ୍ତ୍ର ନିତ୍ୟ ପ୍ରସାରଣ ।

---

(୭) ଖଣ୍ଡାହଣା—ବାଣପୁର ଅଞ୍ଚଳର ଗୋଟିଏ ପାହାଡ଼ ।

ସାମ୍ରାଜ୍ୟ ଗ୍ରାସିଚ୍ଛି ଲିପ୍ସା ଇଂରେଜ ଶାସକେ
ସ୍ଥାପିବେ ଇଂରେଜ ରାଜ୍ୟ ବିନାଶି ପାଇକେ ।
ଇଂରେଜ ହୋଇବେ ପ୍ରଭୁ ପାଇକ ଭୂମିର
ସମ୍ରାଟ, ଏକାଧିପତି ଏକଚ୍ଛତ୍ର ବୀର ।
ଏକଥା ସହି କି କେବେ ପାରିବେ ପାଇକେ
ସ୍ୱର୍ଗୀୟ ଜନମଭୂମି, ସ୍ୱରାଜ ରହିକେ ?
ଦେଶ ପ୍ରୀତି ଜାତି ପ୍ରେମ ପ୍ରକ୍ଷୋଦିତ ଜନେ
ଦାମିନୀ ଯେସନ ଦୀପ୍ତ ଘନକୃଷ୍ଣ ଘନେ—
ତେସନ ସ୍ୱାଧୀନ ଭାବ ମୁକ୍ତ ଜ୍ୟୋତିଜାଲ
ଫୁଟାଏ ମୁକ୍ତିର ପଦ୍ମ, ହୃଦୟେ-ଜମ୍ବାଲ ।
ଅନ୍ୟାୟ ଶୋଷଣ ମୂଳେ କରିବା ପ୍ରହାର
ପାଇକ ରକ୍ତର ଯେହେତୁ ଚିର ଅଧିକାର ।
ତା' ଉଷ୍ଣ ଶୋଣିତ ରୂପ ହୋମ ବହ୍ନି ଶିଖା
ଫିରିଙ୍ଗି ପତଙ୍ଗେ ଏବେ ନ ଦେବ କି ଶିକ୍ଷା ?
ବୀର ଶୋଣିତ ଗର୍ଜନ କୁଳଶୁଁ ଭୀଷଣ
ତା ନିଃଶ୍ୱାସ-ଝଡ଼ ଝଞ୍ଜା ଫୁଟାଏ ପାଷାଣ ।
ବୀର ରକ୍ତେ ଗଢ଼ା ପ୍ରାଣ ପିଣ୍ଡ ଠସ ପାଇକେ
ଓଡ଼ିଶା ମୂଲକେ ଅଛି ତାହାଙ୍କ ସରି କେ
ଧମନୀକି ଧକ୍କା ଦିଏ ଅନ୍ତର ଭିତରୁ
ଜାଗ ଜାଗରେ ପାଇକେ, ପାହାଡ଼ ପ୍ରାନ୍ତରୁ—
ଜାଗ ମୁହୂର୍ତ୍ତକେ, କର ଶପଥ ଗ୍ରହଣ
ଏକେ ତ ସ୍ୱଦେଶ ମୁକ୍ତ, ଅଥବା ମରଣ ।
ଫିରିଙ୍ଗି ଅମଳ ନୂଆ ବିଦେଶୀ ଶାସନ
ଶାସନ ସ୍ୱରୂପ ଖାଲି ମୂଲକ-ଶୋଷଣ

କ୍ଷମତାର ଅଧିକାରେ ଗୋଲା ଗୁଳି ମୁଖେ
ବିଜାତୀୟ ଠିଆ ପୁଣି ଜନ୍ମଭୂମି ବୁକେ'
ଏଥି ବଳି ଅଛି କିବା କଳଙ୍କ କାଳିମା
ବୀର ଦେଶେ ବୀରପକ୍ଷେ ଅପମାନ ସୀମା ?
ଶ୍ରେୟସ୍କର ଶତଗୁଣେ, ମୃତ୍ୟୁ ତତକ୍ଷଣେ
ଜୀବନ ଯଥାର୍ଥ ନୁହେଁ ଶତ୍ରୁର ଶରଣେ ।
ଜୀବନ ଯାଥାର୍ଥ୍ୟ ଲଭେ ସ୍ୱମୁକ୍ତି ସଂଯୋଗେ—
ସ୍ୱମୁକ୍ତି ପ୍ରାପତ ହୁଏ ବୀରତ୍ୱ ସଂଭୋଗେ ।
ବୀରତ୍ୱ ଅର୍ଜନ ତେବେ ନୁହେଁକି ଜଗତେ
ତରୁଣ ଆଦର୍ଶ ଭୁଙ୍ଗ ସ୍ୱଦେଶ ମହତ୍ୱେ ।
ହର୍ମ୍ୟକ୍ଷ-ଭୁବନେ ସତେ ସଂନ୍ୟସ୍ତ ଶୃଗାଳ
ସାଜିବ ସଗର୍ବେ ପ୍ରଭୁ, ଏହାକି କପାଳ ?
କୁରଙ୍ଗୀ ନୃତ୍ୟ କି କରେ ଶାର୍ଦ୍ଦୁଳ ସମ୍ମୁଖେ,
ମେଘ କି ଆବୃତ କରେ ଉଦ୍ଦୀପ୍ତ ମୟୁଖେ ?
ଫିରିଙ୍ଗି ଅନ୍ୟାୟେ ଶତ ପୀଡ଼ା ଅନାସ୍ଥରେ
ପ୍ରତି ପାଇକର ନାହିଁ ଶାନ୍ତି ପରିବାରେ ।
ଅସନ୍ତୋଷ ବହ୍ନି ଉଠେ ଅଗ୍ନି ଉଦ୍‌ଗୀରଣେ
ଘୃଣା ଦ୍ୱେଷ ପ୍ରତିଶୋଧ ଜାଗେ କ୍ଷଣ କ୍ଷଣେ ।
ବଡ଼କୂଳ(୭)ଠାରୁ ବଙ୍କାଢ଼ ଯେ କରି ଏକାକାର
ତରୁଣ ପାଇକ ପ୍ରାଣୁ ଉଠୁଛି ହୁଙ୍କାର ।
ଫିରିଙ୍ଗି ଶାସନ ଜାଲି ପୋଡ଼ି ଦେବାପାଇଁ
ନୀଳ ସୋଲଡ଼ୀକି କହେ ଖଣ୍ଡା-ଦଣା ଗାଇ ।

(୭) ବଡ଼କୂଳ— ପୁରୀ ଜିଲ୍ଲାର ଦକ୍ଷିଣ ସୀମାରେ । ଏଠାରେ ସରକାରୀ ଡାକ ବଙ୍ଗଳା ଅଛି ।

ଶିଳବୃକ୍ଷ ଭୟଙ୍କର ଗ୍ୟାଲେରୀ କ ଗ୍ୟାଲେ
ବଇଶାଖୀ ଅଗ୍ନି ଠୀକା, ଲେଟଖ ମାୟାଜାଲେ।
ଦୂର ଦୂରାନ୍ତରେ ବସ୍ତି ପାଇକ ପଲ୍ଲୀରେ
ସମର ସଙ୍କେତ ଏବେ ସ୍ପଷ୍ଟ ତଉଧାରେ।
ସାରା ଟାଙ୍ଗପୁର ଥରହର ପ୍ରତି କ୍ଷଣେ
କଥୋପକଥନରତ କାହିଁ ଜଣୁଁ ଜଣେ।
ଗ୍ରାମେ ଗ୍ରାମେ ଗଢ଼ା ହୁଏ ସାମରିକ ଘାଟି
ଦୃଢ଼ ସଂଗଠନେ, ଗିରି ଦେହେ ବର୍ମ କାଟି।
କେଉଁ ଗ୍ରାମୁଁ କିଏ ଆଗେ ସେନା ଶ୍ରେଣୀ ଭୁଲେ
ଅନ୍ତର୍ଭୁକ୍ତ ହେବ, ପଢାଇବ ସ୍ଫୁର୍ତି ଶଳେ।
ସେନାର ଅଗ୍ରଣୀ ସାଜି କିଏ ସେନାପତି
ଅକାଟ୍ୟ ଅଦମ୍ୟ ବୀର୍ଯ୍ୟେ ହେବ ଦଳପତି।
କିଏ ସେ ଇଂରେଜ ଆଗେ, ଛୁଲ ସୈନ୍ୟ ବ୍ୟୂହ
ଶୃଙ୍ଖଳ ସଂଯମେ ରଖି ରାଜଧାନୀ ଗୃହ।
ଲଢେଇ କରିବ ଶେଷେ ବିଜୟ ଶପଥେ
ଯୋଗ୍ୟ ଜାତି ଯୋଗ୍ୟ ସୁତ ବୋଲାଇ ଜଗତେ।
ଫିରିଙ୍ଗି ବିରୁଦ୍ଧ ଦ୍ରୋହେ ଯୋଗ୍ୟ ଦଳପତି
କିଏ ହେବ ସେଥିଲାଗି ଭାବନା ସଂପ୍ରତି।
ସେ ଭୁଙ୍ଗ ବିପ୍ଳବ ପୁଞ୍ଜେ ସାଜି ସଞ୍ଚାଳକ
ଏହିଥର ପାଠଶାଣୀ, ଧରନ୍ତୁ ଶାୟକ।
ଆଜନ୍ମ ଉନ୍ନତ ଶିରେ କୋଟି ଦେଶବାସୀ
ପଗଡ଼ି ବାନ୍ଧିଣ ଦେଲେ ବିଜୟ ମନାସି।
ପାଇକ ଛତ୍ରକ୍ଷି ଦଳେ ପାଠଶାଣୀ କରେ
କରବାଳ ସମର୍ପଣ କଲେ ଶୁଭ ଫଳେ।

ତାଚି ଉଠେ ନମିଷକେ ବାଣପୁର ଧଗ୍ର
ମାଚି ଉଠେ ସୁପ୍ତ ଶକ୍ତି ପାଇକର ସଗ୍ର ।
ଦେଶ ପ୍ରୀତି ହୃତାଶନ, ଆଜି ପ୍ରଜ୍ୱଳିତ
ପାଠଶାଣୀ ନଗ ଦୁଇପଠା ପ୍ରକଂପିତ ।
ଅଶ୍ୱ ଆରୋହଣେ କାହ୍ନି ଆଶୁଗ ସହାୟେ
ପାଠଶାଣୀ ବୁଲିଯାନ୍ତି ଆବର୍ତ୍ତି ପଗ୍ରୟେ ।
ପାଠଶାଣୀ ବାର୍ତ୍ତା ବ୍ୟୋମବାହୀ ହିଡ଼ ସମ,
ଖେଳିଯାଏ, ସ୍ତରେ ସ୍ତରେ ସଂସ୍କୃରି ବନ୍ଦେମ ।
ଉଦ୍ଦାମ ଉତ୍ସାହ ସିକ୍ତ ବୀର ପ୍ରାଣ ବାଣୀ
ଶୁଣାଯାଏ ମୂର୍ଖ ମୁଖେ ଫିରିଙ୍ଗି କାହାଣୀ ।
ଫିରିଙ୍ଗି ବିଧ୍ୱସ୍ତ ହେବେ ଦେଶମାତୃକାରୁ
ଜମ୍ବୁକ ହୋଇବ ଦୂର କେଶରୀ ଗୁହାରୁ ?
ଭଲେରୀ ପଯ୍ୟର ସ୍ଥିତ ନୀଳ ପଲ୍ଲୀମାଳ
ପାଠଶାଣୀ ଦ୍ୱାକେ ଏବେ ହେଲେ ଅସମ୍ଭାଳ ।
ସୁନୀଳ ସୋଲରୀ ସ୍ୱର୍ଗେ ଠେକି ନୀଳ ଶିର
ସରଗ ସ୍ପର୍ଶୀ ଆସ୍ପର୍ଦ୍ଧା ଆଚରଣେ ସ୍ଥିର ।
ଲହରୀ ଚପଳ, ହ୍ରଦ ତୀରଦେଶେ ଏବେ
ପାଠଶାଣୀ ବୁଲେ, ଖଗ୍ର ବରଷା ନ ଭାବେ ।
ଫିରିଙ୍ଗି ବିଦ୍ରୋହ ପୁଞ୍ଜ ଉତ୍ତ୍ୟକ୍ତ ଉଦନ୍ତ
ସୃଷ୍ଟି କରି ବୁଲେ ପ୍ରାଣେ ବନ୍ଦେମ ଅନନ୍ତ ।
ଦେଶାତ୍ମବୋଧର ପ୍ରାଣପୂର୍ଣ୍ଣ ପରିଚୟେ
ରାଜ ରାଜଧାନୀ ପ୍ରଜା ପାଇକ ହୃଦୟେ ।
ଫିରିଙ୍ଗି ବିରୁଦ୍ଧେ ଜାଗେ ସମର କମ୍ପନ
ସ୍ୱଜାତି ସ୍ୱଦେଶ ଚିନ୍ତା ଅମୂଲ୍ୟ ସପନ ।

ଦେହ ପାତ ହେଉ ପଛେ ସ୍ୱଦେଶ ସ୍ୱାଧୀନ
ବୀର ସିନା ବୁଝେ ବୀର ଜୀବନ ନିଦାନ ।
ଅସାଧାରଣ ସେ ପ୍ରଜାପାଠେ ପାଠଶାଣୀ
ତପ୍ର ହୁଅନ୍ତୁ ଯୁଦ୍ଧେ ଶୁଣି ଦେଶବାଣୀ ।



# ଦ୍ୱିତୀୟ ସର୍ଗ

( ରାଗ—କଳହଂସ କେଦାର )

କହନ୍ତି ମାଝେଣୀ "ଶୁଣ ସୁନ୍ଦରି,
ମୋ ଜାତି ପାଇଁ ଯାଏ ମୁଁ ଯୁଦ୍ଧ କରି
ଆନନ୍ଦ ପ୍ରାଣେ ବଧୂ ଦିଅ ବିଦାୟ,
କର୍ତ୍ତବ୍ୟ ଆଗେ କାହିଁ ଲୋତକ, ହାୟ ।
ଜନନୀ ଜନ୍ମଭୂମି ସ୍ୱର୍ଗୁଁ ଅଧିକ,
ସ୍ୱଦେଶ ଆଗେ ନିଜ ସ୍ୱାର୍ଥ ଅଳୀକ ।
ସନ୍ତାନ ଶୁଣେ ନାହିଁ ଯେବେ ଆହ୍ୱାନ
ଏଥୁ ବଳି କି ଅଛି ମାତା ଦହନ ।

"ଯେ ଦେଶ ମାଟି ମୋର ଜନମ ଭୂମି,
ଜଳଧି ବହେ ଯା'ର ଚରଣ ଚୁମି ।

ଯେ ଦେଶ ପାଣି ମାଟି ମଧୁ ପବନେ,
ବଢ଼ିଲେ ଆମେ ଯା'ର କୋଳେ ଯତନେ ।
ଯେ ଦେଶ ବନ କୁଞ୍ଜ ବୀଥି ମୁକୁଳ,
ଚୂତ ମଞ୍ଜରୀ ପିକ-କଳାପେ କୁଳ ।
ଅଶୋକ ନାଗେଶ୍ୱର କେତକୀ କିଆ,
ନାଚି ନଚ୍ଚଏ କିବା ତରଳ ହିଆ ।

ନୀଳ ଚିଲିକା ଯା'ର ମୁକୁତା ହାଟ,
ଚପଳ ବୀଚି କରେ ଶୋଭା ପ୍ରକଟ ।
ଯାହାର ସାରିକୁଦ ହ୍ରଦ ପଦକ
ନୀଳ ଲହରୀ ଯା'ର ଘନ ଅଳକ ।"
"ଭେଲେରୀ ଶିଖ ଫାଖ ପୋଲରୀ ବାଙ୍କ
ଭଲ୍ଲୁକ ଯହିଁ ରହେ ଦ୍ୱାର ସଦାଙ୍କ ।
ଯା' ବନ କୁଞ୍ଜ ମାନେ ଝରେ ପୀୟୁଷ,
ମୁଁ ପରା ସେ ରାଇଜ ଯୁବା ପୁରୁଷ ।

ବନ କୁସୁମେ ବନ୍ଧା ଘନ କବରୀ
କବରୀ ଯୁକ୍ତ କନ୍ଧ ବାଳା ଶବରୀ ।
ମଧୁ ସଂଗ୍ରହେ ବ୍ୟସ୍ତ ଯା' ବନ ବାଳା
ସେ ଭୂମି ପାଇକର ସମର ଶାଳା । "
"ଯେ ସ୍ୱର୍ଗ ସମ ଦେଶେ ଆମ ନିବାସ
ତା ଭାଗ୍ୟେ ଆମ ଭାଗ୍ୟ ଯୋଡ଼ା ଅବଶ୍ୟ ।
ସ୍ୱଦେଶ ବିପତ୍ତିରେ ଆମେ ସୁନ୍ଦରୀ
ରହିବା କେମନ୍ତେ କହ ଧଇର୍ଯ୍ୟ ଧରି ।

ସ୍ୱାମୀଙ୍କ ଅଶ୍ରୁ-ଭାଷା ଶ୍ରବଣ କରି
ଲୋତକ ଝରାଇଲେ ନେତ୍ରେ ସୁନ୍ଦରୀ ।
ପଦ୍ମ ନୟନେ ଶୀତ ବିଷାଦ ବରି
ବିଷାଦ କିବା! ମର୍ମ ଦେଉଛି ଘାରି ।
ଆସନ୍ନ ପ୍ରିୟ ସ୍ୱାମୀ ବିରହେ ଚିନ୍ତା
ଜାଳିକି ଦେଲା ଚିତ୍ତେ ଅଲିଭା ଚିତା ।
ପୋଡ଼ିକି ଦେଲା କ୍ଷଣେ ନାରୀ ହୃଦୟ
ତନ୍ୱୀ ପ୍ରତିକି ପାଠଶାଣୀ ନିର୍ଦ୍ଦୟ ।

ଠିଆ ସେ ହେଲେ ବଧୂ ବଦନ ପୋଛି
ଫୁଲ୍ଲଇ ମାନେ ଟିଲ ନାସିକା ମୋଛି ।
ଲୋଚନ ଥନ ଥନ କାକୁତି ଭରା
ଘନ କି ବରଷିବ ଘନ ଅସରା ।
ତରୁଣୀ ମନେ ମନେ ହୁଅନ୍ତି ଭୋଳ
କରିବେ କିବା ସ୍ୱାମୀ ଚରଣେ ଅଳି,
କହିବେ ଖୋଲି ହୃଦ ଗହନ କଥା
ନବୀନ ଯଉବନେ ବିଦାୟ ବ୍ୟଥା ।

ପର ମୁହୂର୍ତ୍ତେ କାହୁଁ ବ୍ରୀଡ଼ା ପ୍ରାବୃଟ
ଘୋଡ଼ାଇ ଦେଉଥାଏ ମନ ସଂପୁଟ ।
ହେମ ଲପନେ କୃଷ୍ଣ ଛାୟା ଗଭୀର
ଗୋପନ ହୃଦେ ବାଜେ ବିଦାୟ-ତୀର
ସହଜେ ନାରୀ-ମନ ନିତ୍ୟ ଗୋପନ
ଲୁପତ ଭାବଗ୍ରସ୍ତ ତା ଯଉବନ ।

ସ୍ୱଭାବେ ଯୁଗେ ଯୁଗେ ବଙ୍ଗେ ଯୁବତୀ
ନୀରବତା ମୂର୍ତ୍ତି ସେ ମଉନାବତୀ ।

ଗୋପନେ ଅନ୍ତରାଳେ ବେଦନା ବହି
କୋମଳ ଚିତ୍ତ-ପୃଷ୍ଠେ ଶଇଳ ସହି,
ମଉନେ ଝୁରି ଝିନା ସାରା ଜୀବନ
କା' ଆଗେ ନାହିଁ କହେ ଖୋଲି ତା ମନ ।
ଏକାଳେ ପାଟେଶ୍ୱରୀ ପ୍ରାଣର ରାଣୀ
ସ୍ୱାମୀର ମୁଖୁଁ ରଣସଜ୍ଜା ମେଲାଣି—
ବାଣୀ ଶୁଣି ହୃଦୟେ ହୋଇଲେ ଭ୍ରମ
ବାତାହତ କନକ ପ୍ରତିମା ସମ ।

ଭରସି ନାହିଁ କିଛି କହନ୍ତେ ବାଳ
ହୃଦୟେ ବଢ଼େ କନ୍ତୁ ଆଶଙ୍କା ଜ୍ୱାଳ ।
କୋମଳବକ୍ଷେ ଅବା ପଡ଼େ କୁଳିଶ
କେ ଅବା ସୁଧାଭାଣ୍ଡେ ଭରଇ ବିଷ ।
ପ୍ରେୟସୀ ମୁଖେ ଦେଖି ବିରସ ଭାବ
ବିଦାୟ ବେଳ ଅଶ୍ରୁ ଘୋର ପ୍ରଭାବ ।
କହନ୍ତି ପାଟେଶ୍ୱରୀ ପୁଣି ବୁଝାଇ
ବିଦାୟ-ବ୍ୟଥା-ମସୀ ପୋଛିବା ପାଇଁ ।

କହନ୍ତି ପାଟେଶ୍ୱରୀ ସାନ୍ତ୍ୱନା ଗୀର
"ହେ ମୋର ପ୍ରାଣ-ସଖି ନୁହଁ ଅଧୀର ।
ନୀରବେ ଅଶ୍ରୁ ଭରି ନୟନ କୋଣେ
ମରମେ କ୍ଳେଶ ଆଣ କେଉଁ କାରଣେ ?

କୁସୁମ ସଦବ ବନ୍ଦୀ କୁସୁମେ ବନ୍ଧା
ହେଲା ବୋଲିକି ଭୃଙ୍ଗ ଭୁଲିବ ଧନ୍ଦା ?
ପ୍ରେମ ପ୍ରଣୟର ରାଜ୍ୟେ ପୁଷ୍ପ ଜଗତେ
ଭୃଙ୍ଗର ନାହିଁ କିବା ଦାୟିତ୍ୱ ସତେ ।

ପ୍ରେମ, ପୀରତି ଜୀବନର ସର୍ବସ୍ୱ
ପ୍ରଣୟ ଉପଭୋଗ କାମ୍ୟ ଅବଶ୍ୟ ।
ମାତ୍ର ଯୁବକ-ଜନ ଜୀବନ ଘେରି
ରହି ନାହିଁ କି ଦେଶ-ଦଶ-ପାଚେରୀ ?
ସମଗ୍ର ଜୀବନର ସବୁ ବାଟରେ
କଠୋର କର୍ତ୍ତବ୍ୟର କୂଳଣ ଜାଗେ ।
ନ ହେଲେ କିବା ସତେ ହେବ ସମ୍ଭବ
ତପନ, ଶଶୀ, ଗ୍ରହ ସୃଷ୍ଟି ବୈଭବ ?

ଶାରଦ ସ୍ୱଚ୍ଛ ଶୁଭ୍ର, ଶିଶିର-ସ୍ନାତ
ରଜତ ଜ୍ୟୋତ୍ସ୍ନାକର ବିଳାସ ପ୍ରାପ୍ତ ।
ପ୍ରେୟସୀ ଚକୋରୀରେ ଚକୋର ପତ୍ନ
ବିଦାୟ ଦେଇ ପାରେ ଏଇତ ଧର୍ମ ।
ପ୍ରଣୟ ଜୀବନର ଏକ ପାଦଛନ୍ତି
ପ୍ରଣୟୁଁ ପୂରେ ଯିନା ଜୀବନ ସ୍ୱଚ୍ଛ ।
ଯୌବନ ପ୍ରିୟା ସନା ଶିବ ସୂଚକ
ଯଥାର୍ଥ ଜୀବନର ପରିପୂରକ ।

ସୃଜନେ ନାରୀ ନୀଳ ଘନ କୁନ୍ତଳ
ଅମୃତ ବର୍ତ୍ତିକାରୂପୀ ରୂପ ଉଜ୍ଜ୍ୱଳ ।

ପୂରିତ ଲୋଧ୍ର ରଜ ଝିସ ନୟନା
କିବା କାରଣେ ବାଧି କରେ ରଚନା ।
ଅରବିନ୍ଦ ପାଖୁଡ଼ା ଭିତରେ ଆନତ
ସତେ କି ହୁଏ ନାହିଁ ତୁଷାର ପାତ ।
ତୁଷାର ପାତେ କିପା ପ୍ରିୟଙ୍ଗୁ ବଲ୍ଲୀ
ହେମ ପାଣ୍ଡୁର ଲଗ୍ନେ ନ ଯାଏ ଝିଲି ।

ଗନ୍ଧ ଭୂଷଣ ଯୋଗ୍ୟ ଚୂତ ମୁକୁଳେ
ପ୍ରକୃତି କିବା କେବେ ସ୍ୱଧର୍ମ ଭୁଲେ ।
ଦିଅଇ ନାହିଁ ଲଭି କୁହୁଡ଼ି-ଶାପ ?
ସମ୍ଭବେ ଅଛି ଜଡ଼ି ଅଶ୍ରୁ ବିଳାପ !
ସୁରମ୍ୟ ଶେଫାଳିକା ରୂପେ ବିଭ୍ରମ
ହୋଇ କି ଭୃଙ୍ଗ କରେ ଦାମ୍ପତ୍ୟ-ଭ୍ରମ ?
ଚନ୍ଦ୍ରମା ନ ଯାଏ କି ଶଇଳ ଚୂଳେ
ଉପେକ୍ଷି କୁମୁଦିନୀ ସରସୀ କୂଳେ ?

ସା'ର ପ୍ରକୃତି ଯେବେ ଉପେକ୍ଷା ରୀତି
ଜଣେ ଜଣଙ୍କୁ ପଛ ଘୁଡ଼ିବା ନୀତି ।
କୁଣ୍ଠେ ବିଶ୍ୱ ରୂପେ କିବା ନ ଘଟେ
ଏ ଆମ ବିରୁଦ୍ଧରେ ତାହା ପ୍ରକଟେ ।
ସ୍ୱଦେଶ ସମରରେ ଯାଉଛି ରଣୀ
ଯେମନ୍ତ ହୃଦୟେ ନାରୀ ପ୍ରେରଣା ବାଣୀ ।
ତୁମରି ହୃଦପଦ୍ମ ଶୁଭ ମନାସ
କହିବ ରଣେ ମୋର ଜୟ ଅବଶ୍ୟ ।



# ତୃତୀୟ ସର୍ଗ

( ବୃତ—ଗ୍ରାମକେଲୀ )

ଖେଳଯାଏ ବାଳ ଅରୁଣ ଜ୍ୟୋତି ସୋଲରା ଚୂଳେ
ଲଗିଛି କି ଉଷା ଉତ୍ସବ ନୀଳ ଚିଲିକା କୂଳେ ।
ବିପିନେ ବିପିନେ କେଦାରେ ବନ ପ୍ରାନ୍ତର କୁଞ୍ଜେ
ପ୍ରଜ୍ୱଳି କୋମଳ ପାଠଳ ଘନ ପଲ୍ଲବ ପୁଞ୍ଜେ ।
ନଦ ନଦୀ ହ୍ରଦ ସରିତ ଝରି ଝରି ନିର୍ଝରେ
ରଜତ ସଲିଳା ସାଳିଆ(୧) କଳକଳ ଲହରେ ।
ଅଭେଦ୍ୟ ବଙ୍କାଡ଼ଗଡ଼ର ବନ କୁଞ୍ଜ ଅନ୍ଧାରେ
ଦୁର୍ଗର ବିଶାଳ ତୋରଣେ, ଉପବନ ସୀମାରେ—
ଖେଳି ଖେଳି ଯାଏ କି ରଙ୍ଗେ ପ୍ରାଚୀ କନକାଲୋକ
ଅନନ୍ତ ବିଭାସେ ଉଦ୍ଭାସି ଉଠେ ସାରା ଭୂଲୋକ ।

---

(୧) ସାଳିଆ—ବାଣପୁର ନିକଟରେ ପ୍ରବାହିତ କ୍ଷୁଦ୍ର ନଦୀ ।

ଘନ ଘନ ବଂଶୀ ବଜାଇ କାହିଁ ରବଇ ଝିଲ୍ଲି
ବିଭାବରୀ ସୁଖ ଶଯ୍ୟନୁ ଜାଗେ ପାଇକ ପଲ୍ଲୀ ।
ଅପସରିଯାଏ ତମିସ୍ରା ଗୁହୁଁ ଗୁହୁଁ ପଲକେ
ଅପସରିଯାଏ ଯେସନ ଦୋଷ ଗୁଣୀ ମଲକେ ।
କୋଟିଏ ଗୋଲାପ ରଙ୍ଗିମା ବୁକେ ବହି କି ଉଷା
ଚିଲିକା ରଜତ ମୁକୁରେ ଦେଖେ ଲାବଣ୍ୟ ଭୂଷା ।
ଆଲୋକ ପ୍ରାଚୁର୍ଯ୍ୟେ ଅନନ୍ତ ବିପିନେ କି ଆକାଶ
ପଲ୍ଲବ ମନେ ତେଜଇ ଆଶ୍ୱସ୍ତିର ନିଃଶ୍ୱାସ ।
ମନ୍ଦ ମନ୍ଦ ବହେ ମରୁତ ମୃଦୁ ଲୀଳା ପ୍ରକାଶେ
କମଳିନୀ ବାନ୍ଧି ନଅଇ ରଶ୍ମି ପାଖୁଡ଼ା ବାସେ ।
ବିଚିତ୍ର ବିପିନ ସଚିତ୍ର ହୁଏ କୁସୁମ ଗୁଚ୍ଛେ
ସୋଲରୀଙ୍କ ଗଇ ଜଟିଆ ସେନା ସମର ପୁଚ୍ଛେ ।
ନାଚି ନାଚି ଆସେ ଚିଲିକା ବୀଚି ଦଳକୁ ଦଳ
ଧୋଇ ଯାଉଛନ୍ତି ଯତନେ ପୂଜା ବେଦୀର ତଳ ।
ବିଶାଳ ଚିଲିକା ପ୍ରବାଳ ମଣି ମୁକୁତା ବେଶେ
କରୁଛି ଦେବତା ଅର୍ଚ୍ଚନା କାଳୀଜାୟୀଙ୍କ (୨) ଦେଶେ ।
ପାଦପ ବଲ୍ଲରୀ ବିକଚ ଫୁଲ ହସ୍ତେ ସୋଲରୀ
ଭୁଲେରୀ କି ଭକ୍ତ ସମାନ ଅର୍ପେ ଯତନ କରି ।
ପୁଷ୍ପଚ୍ୟୁତ ରଜ ବିଭୂତି ପ୍ରକୃତିର ମନ୍ଦିରେ
ପକ୍ଷୀ କଳରବେ ପଢ଼ୁଛି ମନ୍ତ୍ର ଧୀରେ କି ଧୀରେ ।
ଝୁଲେରୀ କି ଆଜି ଲଲାଟେ ସ୍କନ୍ଧେ ଭୁଜେ ଆନନ୍ଦେ
ସଜ ଅର୍ଦ୍ଧସ୍ଫୁଟ ଅଶୋକ ହାରପଟନେ ବାନ୍ଧେ ।

---

**(୨) କାଳିଜାୟୀ ଚିଲିକା ମଧ୍ୟରେ ଥିବା ଗୋଟିଏ କ୍ଷୁଦ୍ର ଦ୍ୱୀପର ଅଧିଷ୍ଠାତ୍ରୀ ଦେବତା ।**

ଅଶୋକ ସ୍ତବକେ ଆନତ ବୃକ୍ଷ ଦୃଶ୍ୟ ମଞ୍ଜୁଳ
ବନବଧୂ ଗର୍ଭ ସାଜେ କି ନାଗେଶ୍ବର ମୁକୁଳ ।
ହେମ କଣ୍ଠଲଗ୍ନ କୌସ୍ତୁଭେ ଦ୍ରୁମଲତା ସଜ୍ଜିତ
ଲତିକା ପ୍ରବାଳ ଅଧରେ ମଧୁଦ୍ରାକ୍ଷା ଜଡ଼ିତ ।
ବୀର ପାଠଶାଣୀ ପାଇକ ଜାତି ମୁକୁଟ ମଣି
ପାଇକ ସମାଜେ ଶୁଣାଇ ଅଛି ସମର ବାଣୀ ।
ଦିଗେ ଦିଗେ ଅଛି ପେଷି ସେ ଗୁପ୍ତ ବାର୍ତ୍ତା ବିସ୍ତରି
ଯୁଦ୍ଧ ଯୁଦ୍ଧ ବୋଲି ମୂଲକେ ପଡ଼େ ଚହଳ ଭାରି ।

ପାଠଶାଣୀଙ୍କର ସଂକଳ୍ପ ପ୍ରାଣମୂର୍ଚ୍ଛା ଆହ୍ବାନ
ସ୍ବଜାତି ମୁକତି ସମରେ କିଏ ନ ଦେବ ପ୍ରାଣ ?
ଜାତିପାଇଁ ସିନା ଜାଗୃତି ଯୁବକର ସପନ
ମାତୃଭୂମି ମହା ମର୍ଯ୍ୟାଦା ଯୋଗ୍ୟ ସନ୍ତାନ ଧନ ।
ଜାତି ପ୍ରୀତି ସିନା ଜଗତେ ନର ଜୀବନେ ସାର
ଦେଶ ପ୍ରୀତି ସିନା ନରକେ ସୁରଚର ସମ୍ଭାର ।
ଗ୍ରାମେ ଗ୍ରାମେ ପଶି ସତର୍କେ ଗୁପ୍ତ ଉଦ୍ଦେଶ୍ୟେ ଭ୍ରମି
ଭେଟୁଛନ୍ତି ସର୍ବ ପାଇକେ ପାଠଶାଣୀ ବାହମୀ ।

ମନ୍ତ୍ରଣା ଗୁପତ ବିସ୍ତର ଚାଲେ କି ରାତି ଦିନ
ଲୋକ ଶୋଷ ଭୁଲି ଯାଆନ୍ତି ହୁଏ ଶରୀର କ୍ଷୀଣ ।
ତରୁଣ ବୟସ, ଶରୀର ରମ୍ୟ, ଉନ୍ନତ ଶିର
ଚଳେ ଅଶ୍ବାରୋହୀ ଗରବେ ପାଠଶାଣୀ ସୁସ୍ଥିର ।
କଦମ୍ କଦମ୍ ଘୋଡ଼ା ତା ଟୁଲି ଯାଉଛି ଚାଲି
ଠାପୁ ଚଳେ ଚଳେ ପଲକେ ଉଠେ ପଥର ବାଲି ।

ଘୋଡ଼ା ପରେ ବସି ଶୋଭଇ କେତେ ସୁବାମଉଳ
କାନେ ଝୁଲୁଅଛି କି ରଙ୍ଗେ ଆହା ବୀର ବଉଳ ।

ସତେ ସୁରପତି ତୁରଗେ କରୁଅଛନ୍ତି ବିଜେ
ପ୍ରଜା ଦୁଃଖସୁଖ ଦେଖିବାପାଇଁ ଲୋଚନେ ନିଜେ ।
ଅରୁଣ ତରୁଣ ତିଳକ ପାଇକଙ୍କ ସଙ୍ଗାଳି
ବୁଲନ୍ତି ଦୁଆରୁ ଦୁଆରେ ଜାତି ତା ଜପାମାଳି ।
ଶୁଅନ୍ତି ନାହିଁ ସେ ନିଶୀଥେ ଦିବା ବିଶ୍ରାମ ହୀନ
ବୁଲେ ପାଠଶାଣୀ ମୁଲକେ କରିଦେବ ସ୍ୱାଧୀନ ।
ଭାନୁ ଯେବେ ଅସ୍ତ ଯାଆନ୍ତି ଚୁମି ଭୂଲେରୀ ଭାଲ
ଗୋଧୂଳି କୁନ୍ତଳେ ଉଠଇ ଜଳି ତାର ମଶାଲ ।

ନୀଳାମ୍ବୁ ଚିଲିକା ଲହରୀ ଅସ୍ତ ରାଗେ ରଞ୍ଜିତ
କନକ ସିକତା ସରଗେ ହଂସରାଳି ଶିଞ୍ଜିତ ।
ଘୋଟି ଆସୁ ଆସୁ ସୋଲରୀ ଚୂଳେ ତିମିର ଗୁମ୍ଫା
କଟିଆ ପାହାଡ଼େ ଉହାଡ଼େ ଲଗୁ ରଜନୀ ମାମ୍ଫା
ପଲ୍ଲବ କୋମଳ ତଳପେ ନୀଡ଼େ ବିହଗ ପନ୍ତି
ଆଗାମୀ ରଜନିର ସ୍ୱପନେ କାହିଁ ବିଭୋର ଅଛି ।
ଝିର କଳ କଳ ସଙ୍ଗୀତେ ମିଶୁ ଧୀରେ ପବନେ
ନୀରବ ନିଶାର ନୂତନ ଛନ୍ଦ ଗନ୍ଧ ଗୋପନେ ।
କୋଟି କୋଟି ଫୁଲ ନକ୍ଷତ୍ରେ ହେଉ ମଣ୍ଡିତ ନଭ
ବୁଲୁଥାନ୍ତି ପାଠଶାଣୀ ଯେ, ସତେ କି ଧୈର୍ଯ୍ୟ ଦମ୍ଭ !
କେବେ ବୁଲଇ ସେ ତୁରଗ ପୃଷ୍ଠେ ଯାମିନୀ ସାରା
ଦୁର୍ଭେଦ୍ୟ କାନନ ସୁଡଙ୍ଗେ ଧରି ଜୀବନ ଭାରା ।

ସଦା ସର୍ବଦା ସେ ସଜ୍ଜିତ ସାମରିକ ପୋଷାକେ
ନାଚିଉଠେ ତାର ଅନ୍ତର ବୀରଙ୍ଗୀର ପୁଲକେ ।
ଗତି ପଥେ ପଥେ ତାହାର ଫୁଟେ ତେଜ ଅନନ୍ତ
ତେଜେ ଭରିଥାଏ ଯେସନ ନବମଧୁ ବସନ୍ତ ।

ପାଠଶାଣୀ ଚୁଲେ ଠାଣିରେ ସଦା ଶାସ୍ତ୍ରକ ପାଣି
କଲେ ଝୁଲୁଥାଇ କୃପାଣ ଆହା ଅପୂର୍ବ ଠାଣି ।
ପ୍ରଭାତେଛି ଏବେ ଶର୍ବରୀ ବଣ ବିପିନ ମାଳେ
ବନବଧୂ ଗାଏ ସ୍ୱସ୍ତିକ ମଧୁ କାକଳୀ ତାଳେ ।
ନ ଦିଶୁ ପୂରବେ ଉଷାର କୋଟି ଗୋଲାପ ରୂପ
ଖେଳୁ ନ ଖେଳୁଣ୍ଟ ବିପିନେ ଗନ୍ଧ କୁସୁମ ଧୂପ,
ଭରତିଆ ସ୍ୱପ୍ନ କେଦାରେ ଲକ୍ଷ୍ମୀଦେବୀ ମନ୍ଦିରେ
ନ ଶୁଭୁ ପୂରବେ ପ୍ରଭାତେ କାହିଁ ପାଇକ ବୀରେ

ସଜ ହେଉଛନ୍ତି ସମରେ ନିଜ ଦେଶ ପ୍ରେମରେ
ଜୀବନ ମରଣ ଚିନ୍ତା କି ଜାଗିଅଛି ଅନ୍ତରେ
ବଙ୍କାଡ଼ ଗଡ଼ର ମାଟେରୀସମ ଯେତେ ଭୂଧର
ଯେତେ ବନଗିରି ପ୍ରାନ୍ତର ବଣ ଦେବ ମନ୍ଦିର ।
ଦିଗେ ଦିଗେ ଆଜି ଉଦିତ ନବ ଜୀବନ ଭାନୁ
ସେ ନବ ଆଲୋକେ ଧଉତ ଯେତେ ଶଇଳ ସାନୁ
ପ୍ରଭାତ ପ୍ରଥମ ପ୍ରହର ନବ ସ୍ଫୂର୍ତ୍ତି ଚେତନା
ପରଶି ଯାଉଛି ପାଇକ ପଲ୍ଲୀ ଗହନେ ଘନା ।
ଗତ ରାତି ସାରା ଉନିଦ୍ର ଶୂର ସେ ପାଠଶାଣୀ
ଘୋଡ଼ା ଚଢ଼ି ବୁଲିଯାଆନ୍ତି ଗ୍ରାମେଗ୍ରାମେ ବଖାଣି ।

ଏ ପଲ୍ଲୀ ସେ ପଲ୍ଲୀ ମୂଲକ ଅଛି ନିକଟେ ଦୂରେ
ଏ ବଣ ପାହାଡ଼ ସେ ପାରି ନଈନାଳ କେଦାରେ
ବନ ଅଗ୍ନି ଶିଖା ଯେସନ ବନେ ଯାଅଇ ଖେପି
ପାଇକ କୂଳର ଚନ୍ଦ୍ରମା ଯାଏ ତେସନ ଝପି ।
ପାଠଶାଣୀ ପର ଦେଉଛି ଗୁପ୍ତ ଉଦନ୍ତ ପେଷି
ଗ୍ରାମେ ଗ୍ରାମେ କର ଯୋଗାଡ଼ ଶର ତୂଣୀର ଅସି ।

ଦଳ ଦଳ ବାନ୍ଧି ତରୁଣେ କର ସଇନ ସାଜ
ସମୂଳେ ବିନାଶ ଦେଖିବ ଆଜି ଫିରିଙ୍ଗି ରାଜ ।
ତେଣୁ କି ଭୀଷଣ ସମର ଆୟୋଜନ ଉତ୍ସବେ
ଦେଶ ଜାତି ବଳୀ ମହାନ ଜାତୀୟତା ଗୌରବେ ।
ଲିପି ଚଳିଛନ୍ତି ପାଇକେ ଗ୍ରାମେ ଗ୍ରାମେ ଆଗ୍ରହେ
ଚିର ପରିଚିତ ପାଇକ ନବ ସେନା ସଂଗ୍ରହେ ।
ବଣଗିରି ବାଟ ଅମଡ଼ା ଜଣା ଅଜଣା ବାଟେ
ପାଠଶାଣୀ ଛୁଟି ଚାଲନ୍ତି ସର ତଟିନୀ ଘାଟେ ।

ଖଡ୍ଗ କାର୍ତ୍ତି ସେ ଗୌରବେ ଛିଡ଼ି କ୍ଷତ୍ରୀ ସମାନ
କରି ନେଉଥାଏ ପରୀକ୍ଷା କରି ସମର ଜ୍ଞାନ ।
ରଖୁଛି ସେ ଅତି ଯତନେ ଶର ତୂଣୀର ଭରି
ଭାବୁଛି କାହାରେ କେମିତି ଦେବ ମନ୍ତ୍ରଣା କରି
କି ଏ କେଉଁପରି ତରୁଣ କେତେ ଶକତି ତାର
ମରିବ ପଛକେ ସମରେ ନାହିଁ ମାନିବ ହାର ।
ତପନ ବରଷା ଆସାରେ ଶୀତ ଶିଶିରେ ଘୋର
ଛୁଟି କି ପାରିବ ଜୀବନ ଦେଇ ଆହୁତି ତାର ।

ଦେଶ, ଜାତି ପାଇଁ ଅକ୍ଳେଶେ ଯିନା ଦେବ ଜୀବନ
ପଛଘୁଞ୍ଚା ଦେବ ନାହିଁ ସେ ଭୀରୁ କାତର ସମ ।
ବଢ଼କୁଲୁ ଧରି ବଙ୍କାଢ଼ ଜାଗରଣ ବାଦ୍ୟ
ପାଠଶାଣୀ ଡ଼ାକେ ବୁଦ୍ଧିନେ କାହିଁ ପାଇକ କୁଳ ?
ସୁଦୂର ପାଇକ ପଲ୍ଲୀରେ ଲାଗିଅଛି ଚହଳ
ସଜବାଜ ହୁଅ ଯୁବକେ ଦେଖ ବାହୁର ବଳ ।
ସାଧକ ସାଧନା ପରୀକ୍ଷା ବେଳ ଏବେ ଆଗତ
ଜାତି-ଯଜ୍ଞେ ହେବ ଆହୁତି ସର୍ବେ କର ବରତ ।

ଶକତିର ଖେଳେ ଯଇନେ ଆଗେ ସମରେ ଚଳି
ଆମରଣ ଯୁଝି ଯାଆନ୍ତି ଏକୁ ଆରେକ ବଳି ।
ଯୁବ-ଅଭିଯାନ ଅସୀମ ଯୁଗେ ଯୁଗେ ବାଞ୍ଛିତ
ଅଭିମାନେ ଯେଣୁ ଜାତିର ଭବିଷ୍ୟତ ନିହିତ ।
ପାଇକ ପଲ୍ଲୀରେ ଫୁଟିଛି ହେମ ପ୍ରଭାତ ବିଭା
ପ୍ରଭାତ ସ୍ୱରୂପେ ଜାତିର ଶୁଭସଙ୍କେତ କିବା !
ସୁନୀଳ ପୋଲରୀ ବିତାନେ ଘନ କୁଞ୍ଜ ଗହନେ
ଅସୀମ ଆକାଶ ବିତାନ ଚନ୍ଦ୍ରାତପର ତଳେ ।

ରଜତ ଚିଲିକା ସୀମାରେ ଭୀମ ଭାଲେରୀ ପଦେ
ଆଜି କି ନିଖିଳ ପ୍ରକୃତି ଜାଗେ ସମର ମଦେ ।
ମୁକୁଳିତ ଫୁଲ ମୋହନ ରୂପ ତୋଷେ ଛଟକେ
ଶାରଦ ଶିଶିର ସ୍ଫଟିକ ହିମ ଜ୍ୟୋତି ଝଟକେ ।
ସ୍ୱଭାବେ ସୁଷମ ଶିରୀଷ ଶୋଭା ପ୍ରକାଶେ ପ୍ରଭା
ପ୍ରକୃତି ପ୍ରକାଶେ ସାତ୍ତ୍ୱିକ ସତ୍ତା ଜାଗ୍ରତ ଅବା ।

ପାଦପ ଅଟବୀ ଗହ୍ୱରେ ବନଶ୍ୟାମଳ ଶିଖା
କୁହେଳ ବିଭ୍ରମେ ପ୍ରକୃତି ପାତେ ରଣ ପରୀକ୍ଷା ।

ସାତ୍ତ୍ୱିକ ସତ୍ତା କି ବୁଡ଼ାଇ ତାମସିକ ବିଭବ
ଆଜି ବିକଶିତ ହୁଅଇ ବିଦ୍ରୋହର ସ୍ୱଭାବ ।
କଦାଚେ କଦାଚେ ଗ୍ଳଳନ୍ତ ମୂର୍ଦ୍ଧ ପାଇକ ସେନା
ଜାତି ପାଇଁ ଯୁଦ୍ଧ ସେନାର ଆନ୍ତରିକ ପ୍ରେରଣା ।
ପଧାନଚଢ଼ର ଅଧ୍ୟକ୍ଷ ଦଳବେହେରା ଖ୍ୟାତ
ଭୂଇଁମୂଳ କୋଠ କରଣ, ବୈଠୀ କରଣ ସେତ ।
ମୁରୁଷାନ୍ନ୍ୱମେ ଲାଗିରିଖିଆ ସୀମା କରଣ
ସୀମା କରଣଙ୍କ ସହିତେ ଯେତେ ଦଳ କରଣ ।

ଖଣ୍ଡା ଦୋଗୁଁ ଛିଡି-ପୂଜିତ ଖଣ୍ଡାକୁଶଳ ବୀରେ
ଚିରଦିନ ଜନ୍ମ ପଗଡ଼ି ବନ୍ଧା ଯାହାଙ୍କ ଶିରେ ।
ମଦାଚିକ ସେନ-ନାୟକ କାହିଁ ହୋଇ ପଧାନ
ଦୁର୍ଗ ରାଜକୀୟ ବାହିନୀ ଇତିହାସେ ପ୍ରଧାନ ।
ବଂଶ ପରମ୍ପରା ରକ୍ଷଣେ ଧୂରନ୍ଧର ପ୍ରବୀଣ
ସମର କୁଶଳ ଅମର ସେନା ଅମର ଜାଣ ।
କାହିଁ ବଡ଼ମୂଳ ବଙ୍କାଢ଼ କାହୁଁ ଗଡ଼ ବିଶାଳ
ତରୁଣ ପାଇକ ସମର ଲୀଳାଭୂମି ପ୍ରସାର ।

ଗ୍ରୁନ୍ଦିନୀ ଚୁମ୍ବିତ ଚିଲିକା କୂଳ ପାହାଡ଼ ତଳେ
ଦୁର୍ଗମ ବିପିନେ ଶିବିର ଶତ ସ୍ଥାପିତ ହେଲେ ।
ଖଣ୍ଡାହଣା ବିଶେ ଅଥବା ନୀଳ ସୋଲରୀ ବାଙ୍କେ
ଚିହ୍ନକର ସମ ତପନ ଯହିଁ ଗୋପନେ ଆଙ୍କେ,

ଝିର ଝଳ ଝଳ ଚିଲିକା ସ୍ବରୁ ପ୍ରଚ୍ଛଦ ପଟେ
ଇନ୍ଦ୍ର ନୀଳାକାନ୍ତ ପାହାଡ଼ ରୁପ ନିତ୍ୟ ପ୍ରକଟେ
ଗଡ଼ ଗଡ଼ ସେନାବାହିନୀ ସ୍ୱେଚ୍ଛା ସଇନ ଶତ
ସମର ଯାହାଙ୍କ ବିଳାସ ଭୋଗ ଅନବରତ;

ଯୁବକ ସୁଲଭ ପ୍ରେରଣା ଉତ୍ତେଜନା ଉଦ୍ଦାମ
ସ୍ମର୍ବେ ପାଇକ ଜାତି ତ ଶତଜାତି ଲଲାମ ।
ଅନ୍ୟାୟ ବିରୁଦ୍ଧେ ଯା' ବୀର ରକ୍ତ ଉଠଇ ତତି
ନ୍ୟାୟ ଶୁଭ୍ର ପଥେ ଯେ ବୀର ଦିଏ ଶରୀର ପାତି
ସେହି ସେ ପାଇକ ବାହିନୀ ପାଠଶାଣୀ ଇଙ୍ଗିତେ
ଜାଗରିତ ହେଲେ ଜୀବନେ ଜାତୀୟତା ସଙ୍ଗୀତେ
ପାଇକ ପଧାନ ସାମନ୍ତ ଶ୍ରେଷ୍ଠଦ୍ୱୟ ତମଧି
ବୀର ମାନସିଂହ ମହାନ ଆମ ଜାତି ସମ୍ପତ୍ତି ।

ବଳସ୍ତୁରସିଂହ ସିଂହ କି, ମୁଲକରେ ଅଗ୍ରଣୀ
ସାମନ୍ତ ସିଂହାର ଅନନ୍ତ ଶକ୍ତି-ସମ୍ପଦ-ଖଣି ।
ରଣ ଗଉରବ ସତେ କି ଚିରଦିନ ରକ୍ଷିତ
ସମୟେ ସମରେ ପଶିବ କରି ପଣ ବାହିତ ।
ଦେଶ ପାଗ୍ ଏବେ ବାରତା ଖେପି ଯାଉଛି କାହିଁ
ପାଠଶାଣୀ ପଗ୍ ଫିରିଙ୍ଗେ ଦେଖୁ ଦେବ ତଡ଼ାଇ ।
ପାଠଶାଣୀ ପଗ୍ ଆଦର୍ଶେ ହେଲେ ଯୁଦ୍ଧେ ବାହାର
ନିଖିଳ ପାଇକ ଫଉଜ କାହିଁ ହେଲେ ତିଆର ।

ଗୃହେ ଗୃହେ ଖାଲି ଶୁଭଇ ଶୁଭ ସମର ସ୍ୱର
ଝୁଲିଝୁଲା ତୋପ ବାରୁଦେ ସର୍ବେ ହେଲେ ତତ୍ପର ।

ଶର ଶରାସନ କଠୋର, ତରୁଆର ବଲମ
ବର୍ଚ୍ଛା ଢାଲ କାହିଁ ହଜଡ଼ା ଯେତେ ଶସ୍ତ୍ର ଭୀଷଣ ।
କିଏ ପଜାଉଛି କୃପାଣ, କିଏ ସଜାଡେ ତୀର
କିଏ ସେ ପୁରୁଣା ପଗଡ଼ି ସାଥେ ମଣ୍ଡଇ ଶିର ।
ବାଜି ପରେ ସାଜି କିଏ ସେ ପଲ୍ଲୀ ଗ୍ରାମର ପ୍ରାନ୍ତେ
ମନଲାଖି ଘୋଡ଼ା ଦଉଡ଼ କରେ ମଧୁର ପ୍ରାତେ ।

ଯହିଁ ଯାଉଛନ୍ତି ଉଦ୍ଦେଶ୍ୟ ପାଠଶାଣୀ ଦୋସର
ତହିଁ ଉଠୁଅଛି ସଘନେ ମହା ସମର ସ୍ୱର ।
ତାଙ୍କ ପଛେ ପଛେ ପାଇକ ଯେବେ ଦଳକୁ ଦଳ
ଅନ୍ତର୍ଭୁକ୍ତ ହେଉଥାଆନ୍ତି ସେନା ଶ୍ରେଣୀ ସକଳ ।
ପ୍ରାଣେ ପ୍ରାଣେ ବୀର ଚେତନା ଖେଳେ ଯାଉଛି ଖେଳି
କିଏ ବସ୍ତରଇ ମୂଲକେ ହେବ ପାଇକମେଳି ।
ଫିରିଙ୍ଗି ରାଜୁତି ବଲୋପ, ହେବ ସାରା ମୂଲକେ
ଅଦିନ ତମିସ୍ର ଘୁଞ୍ଚିବ ଦେଶୁଁ ନେତ୍ର ପଲକେ ।

କାର ମନୋଗତେ ଆସଇ ଦୃଢ଼ ଭାବ ଏପରି
ପାଠଶାଣୀ ଏକା ନାଶିବେ କଳଙ୍କର ଶର୍ବରୀ ।
ପାଠଶାଣୀ ଘେରି ତରୁଣେ ଗ୍ରାମ ପ୍ରାନ୍ତେ କ ଠାଆ
ଶୁଣୁ ଶୁଣୁ କିଏ ମ ତଲ କିଏ ଫୁଲଏ ହିଆ ।
ନନ୍ଦନ୍ତୁ ଶ୍ରବଣ ଦେଇ ଯେ ସବୁ ଦେଖନ୍ତି ଖାଲି
ପାଠଶାଣୀ ଆସି ଅଛନ୍ତି ଡେଇଁ ପାହାଡ଼ ବାଲି ।
ଗ୍ରାମେ ଗ୍ରାମେ ବାଣ୍ଟି ପ୍ରଖର ସେନା ବୀର ଗଠନ
ପାଠଶାଣୀଙ୍କର ଉଦ୍ଦେଶ୍ୟ ଖରୀ ସାଧନା ଧନ ।

ଶକ୍ତିଶାଳୀ ସେନା ସଂଗ୍ରହେ ଏବେ ସମସ୍ତ ବ୍ରତେ
କି ଖର ବରଷା ଆସାର କିବା ହେମନ୍ତ ଶୀତେ ।
ଜୁଝିବେ ପାଇକେ ପୁଝିବେ ସ୍ୱଦେଶର ସମ୍ମାନ
ତେବେ ସିନା ଯାଇ ରହିବ ପାଟଶାଣୀଙ୍କ ମାନ ।
ଚପଳ ସ୍ପନ୍ଦିନୀ ଚୁମ୍ବିବ କଳ କଳ ଚିଲିକା
ସ୍ପନ୍ଦିନୀ ପରଶ ହରଷ ବନ କୁଂଜ କଳିକା ।
ଫେନିଳ ଧବଳ ଅମଳ ସିକତିଳ ପ୍ରାନ୍ତର
ଧବଳ ଯେସନ ସାଧକ ଯୋଗୀଜନ ଅନ୍ତର ।

ମଦିର ଜୋଛନା ପରଶେ ନୀଳ ଚିଲିକା ହ୍ରଦ
ମୁକ୍ତ୍ୟାତ୍ମା ପରଶେ ଯେସନ ସାଧୁ ହୃଦ ବିଶଦ ।
ଇନ୍ଦ୍ର ପୁରୀ ମଣି ମାଣିକ୍ୟ ଜିଣା ଚିଲିକା ଦେଶ
ମୁଦିର ଚନ୍ଦ୍ରିକା ବକ୍ଷେର ଘୋର ସମରବେଶ ।
ପାରିକୁଦ ଗଡ଼ ମାଲୁଦ ହେମ ସିକତା ଧର
ଆଜି ଏ ଆସନ ସମର ଗର୍ବ ଗୌରବେ ଭରା ।
ଚିଲିକା କବରୀ ପରଶି ସିନ୍ଧୁ ସଖା ସମୀର
କାନେ କାନେ ଏବେ ପ୍ରଶ୍ନରେ ପାଟଶାଣୀଙ୍କ ଗୀର ।

ମାଡ଼ି ଆସୁଅଛି ସମର ବାତ୍ୟା ଘନଗର୍ଜନ
ଦେଶ ଲାଗି ରକ୍ଷେ ଦେବାକୁ ଧନଜନ ଜୀବନ ।
ବହ୍ନିବସ୍ତୁ ବିଶ୍ୱ କରଣ ଯେହ୍ନେ ତିମିରେ ବ୍ୟାପି
ନଷ୍ଟଏ ନିଖିଳ ଜୀବନ ଜାଳି ପୋଡ଼ି ତଥାପି ।
ସର୍ବ ଭକ୍ଷ ଉଗ୍ର ଅନଳ ଯେହ୍ନେ ବିଦଗଧ କରି
ପୂତଶୁଦ୍ଧି କରେ ବସ୍ତୁରେ ସାଧୁନୀତି ଆଚରି,

ତେସନ ଆଗାମୀ ସଂଘର୍ଷ ଜାତି ବିପ୍ଳବ ଧାର
ଜାଲ ପୋଡ଼ି ମାରି ଅନେକେ ମୁକ୍ତ ଆଣିବ ପର ।

ଜଟିଆ ସୋଲରୀ ଭାଟଲରୀ ଖଣ୍ଡାହଣ୍ଡା ମୂଲକେ
ନବୀନ ଜୀବନ ପ୍ରବୃତ୍ତି ଜାଗି ଆସେ ପଲକେ ।
ପାଠଶାଣୀଙ୍କର ଅପୂର୍ବ ବୀର କେଶରୀ ଠାଣି
ଆଜାନୁ ଲମ୍ବିତ ବଳିଷ୍ଠ ଶକ୍ତ ଯୁଗଳ ପାଣି ।
ଶାଣ ଶୀର୍ଷ ସମ ଯୁବକ ବର ଅଙ୍ଗ ମଣ୍ଡଳ
ଶୋଭା ଦେଖି ମନୋଭବ ତ ଲଜେ ଯିବ ମଣ୍ଡଳ ।
ସମୁନ୍ନତ ବକ୍ଷ କଠିନ ଇନ୍ଦ୍ର ବଜ୍ର ଅଭେଦୀ
ଅଙ୍ଗକୁ ଅକାଠ୍ୟ ଶାୟକ ନାହିଁ ପାରିବ ଛେଦି ।

ସେ ଯେଉଁ ନୟନ ଯୁଗଳ, ବିସ୍ଫାରିତ ଲକ୍ଷଣେ
ଡୋଳା ଅଳି ପଦ୍ମ ଖୋଜୁଛି ନୀଳ ଭ୍ରୂର ଗହଣେ
ଅବା କୃଷ୍ଣ ମେଘ ରଥ କି ପକ୍ଷ୍ମ ଶୃଙ୍ଗ ବିତାନେ
ଖେଳି ଖେଳି ଖୋଜେ ବାଞ୍ଛିତ ନିଜ ଶ୍ରେୟ ସନ୍ଧାନେ ।
ନାଶ ଦୁଇପଟା କାନେ କି ଅବା ହୋଇଛି ଖୋଷା
ଭୃଙ୍ଗ ଭ୍ରମର ଆଦରେ ଅତି ହେଉଛି ପୋଷା ।
ବୀରତ୍ୱ ଜୀବନ୍ତ ପ୍ରତୀକ ଚିରଦିନ ସାହସୀ
କହ ସତେ କିଏ ପଶିବ ତାଙ୍କ ପାଖେ ଭରସି ।

ସାକ୍ଷାତ କେଶରୀ ସଦୃଶ ଦୁର୍ଗେ ବଙ୍କାଡ଼ ବନେ
ପାଠଶାଣୀ ବୀର ଜ୍ୱଳନ୍ତ ସେନା ଅନୁସରଣେ ।
ଅମୃତ ଅମ୍ବର ବିତାନେ ନୀଳ ଆଶ୍ୱିନ କ୍ଷଣେ
ଖେଳେ ଯେବେ ଶୁଭ୍ର ଚନ୍ଦ୍ରମା ହେମସୁଧା କିରଣେ ।

ଅଗସ୍ତି ପ୍ରଦୀପ ପବନ ସ୍ପର୍ଶେ ଅଲିଭା ଶିଖା
ଦୂର ଦିଗବଳେ କବାଟୁ ପୂର୍ଣ୍ଣ ନୀଳିମ ରେଖା ।
ଜୋଛନା ପାରଦେ ମଣ୍ଡିତ କରି ବଙ୍କାଡ଼ ବନ
ଧୋଇ ଖଣ୍ଡାହଣା ଖଣ୍ଡିତ ଶୁଭ୍ର ଶିଳାସଦନ,

ଭାଲେରୀ ସେ ଲରୀ ବିତାନ ନୀଳ ଚିଲିକାକୂଳ
ଝରିପଡ଼େ ଯେବେ ନିଶୀଥେ ଚନ୍ଦ୍ର ବିମ୍ବ ବତ୍ସଳ ,
ମହୋଲ୍ଲ ସେ ବନ ବୀଥିକା ଝିଲ୍ଲୀ ସ୍ୱନ ମୁଖର
ଚନ୍ଦ୍ରିକା-ମୁଦିର ନିଶୀଥେ ତୋଳେ ସଙ୍ଗୀତ ସ୍ୱର ।
ସ୍ୱଭବେ ସଙ୍ଗୀତ ପ୍ରବୀଣା ଚିଲିକା କି ଇଙ୍ଗିତେ
କି ମନ୍ତ୍ର ଘୋଷଇ କା'ପାଇଁ କଳ ବେଣୁ ସଙ୍ଗୀତେ
ପଥିକ ମାନସ ବେପଥୁକାରୀ ବଉଦ ଶ୍ରେଣୀ
ନଚ୍ଚଇ ନଚ୍ଚଇ ପୁଲକେ ଜଳ ତରଙ୍ଗ ବେଣୀ ।

ଆଜି ଶେଫାଳିକ ଲଗନେ ଆଶ୍ୱିନର ରଜତ୍ୱେ
ସୃଷ୍ଟି କରୁଛନ୍ତି ଅପୂର୍ବ ଲୀଳ ବଙ୍କାଡ଼ ପଥେ ।
ଅସଂଖ୍ୟ ଶେଫାଳି ସ୍ଫୁଟିତ ସୀମାବ୍ୟାପୀ ସୌରଭ
ଶୁଣ୍ଢ ତୋଳି କ୍ରୀଡ଼ା ମଗନ ମେଘରୂପ କରଭ ।
ମେଘ ବେଣୀ ଯୂଥ ଯୂଥ ସେ ହେମ କୁରଙ୍ଗ ଦଳ
ଆଦର ବ୍ରହ୍ମାଣୀ ଢ଼ାଳନ୍ତି ସ୍ୱଚ୍ଛ ଚିଲିକା ଜଳ ।
ଭାଲେରୀ ପାହାଡ଼ ଉହ୍ଲାଡେ ରକ୍ତ ଅଶୋକ ଗୁଚ୍ଛ(୧)
ଫୁଟୁଛି ଝଡ଼ୁଛି ମଣ୍ଡଳ ତରୁମୂଳ ପାବଚ୍ଛ ।

(୧) ଭଲେରୀ ପାହାଡ଼ରେ ବହୁତ ଅଶୋକ ଗଛ ଅଛି ।

ଅପୂର୍ବ ଚିଲିକା ରାଇଜ ଶାରଦୀୟ ପ୍ରକୃତି
ପାଇକ ପରାଣେ ଜଗାଏ ଦଶହରାର ସ୍ମୃତି ।
ପାଠଶାଣୀଙ୍କର ବାରତା ପାଇ ଗ୍ରାମ ପାଇକ
ସଜ ହେଉଛନ୍ତି ସମର ସ୍ରୋତେ ହେବେ ନାବିକ ।
ପୂର୍ବ ପୁରୁଷର ମଧୁର ସ୍ମୃତି ପ୍ରୀତି ଶପଥେ
କିଏ ମାଜେ କିଏ ସଜାଏ ହସି ଅସି ସରତେ ।
କୁଟୀରେ କୁଟୀରେ କାହାଣୀ କେତେ ସମର ଗପ
ଶତ ଅନୁଷ୍ଠାନେ ମହାନ ବୀର ମୂର୍ତ୍ତି କଳାପ ।

କିଏ ସଜାଉଛି ଉନ୍ନତ ଶିରେ ଶିରିପା କାହିଁ
କିଏ ବାଂଧୁଅଛି ବାହୁରେ ରକ୍ଷା ଦୃଢ଼େ ବାଂଧାଇ ।
ପଜାଇ କେ ରଖେ କୃପାଣ ଚିକ୍କଣ କରି ସ୍ମରଣ
ସ୍ୱଜାତି ସ୍ୱଦେଶ ଅତୀତ ଗର୍ବ ମହିମା ଗୁଣ ।
କା ଘରେ ଦେବୀର ଆରତି ପୂଜା ନୈବେଦ୍ୟ ଧୂପ
ଇଷ୍ଟ ଦେବ ଦେବୀ ଅଲକ୍ତ ପଦେ କରବୀ ସ୍ତୂପ ।
ମାନସ ଉଚ୍ଛ୍ୱାସ ଉଲ୍ଲାସ, ଜୟ ଶବଦ ଭରା
ଉଠୁଛି ପଡୁଛି କଂପୁଛି ବୀର ପାଇକ ଧରା ।

ଢାଲ ତଲୁଆର ବରଛା ଆହା ଘଣ୍ଟି ଘାଗୁଡ଼ି
ବିଜୟ କଳ୍ପନା ଜୁଆରେ ପୁରି ଯାଉଛି ଜଡ଼ି ।
ସାଲ, ବନାଉତ ଚିହ୍ନିତ ରଙ୍ଗ ବସନ ଗଦା
ଯୁଦ୍ଧ ସରଞ୍ଜାମେ ଯୋଗାଡ଼ ଗ୍ରାମ ସମର ପଦା ।
ପଡୁଛି ଉଠୁଛି କା ହାତେ ଅସି-ଚାଳନା ରଙ୍ଗ
ଜାଗ ଜାଗ ଯେତେ ଯୁବକ ପାଠଶାଣୀ ଭକତ ।



# ଚତୁର୍ଥ ସର୍ଗ

( ନଟବାଣୀ—ବୃତ୍ତେ )

ସ୍ୱର୍ଣ୍ଣଭୂଷା ଉଷା ଉଦୟ ଅଚଳେ
ରକ୍ତିମା ପ୍ରକାଶେ ଜଳଦ ପଟଳେ ।
ପଶ୍ଚିମ ଆକାଶ ବକ୍ଷ ତରଙ୍ଗିତ
ପ୍ରବାଳ ସ୍ଫଟିକ୍ କିବା ବିଗଳିତ !

ଦିଗନ୍ତ ବକ୍ଷରେ ବିମଳ ଆଲୋକ
ରଶ୍ମି ଉଦ୍ଭାସିତ ଦ୍ୟୁଲୋକ ଭୂଲୋକ ।
ଅତି ଶୁଦ୍ଧ ପୂତ ପୁଣ୍ୟ ଉଷାକାଳ
ଦିଶେ ଦିଗେ ଦିଗେ ହେମ ଜ୍ୟୋତିର୍ଜାଳ ।

ସଗ୍ରତୀ ପାବଚ୍ଛେ କାହିଁ ଭାନୁବାଳ
ରଜତ କନ୍ଦୁକ ଅବା ଅର୍ଘ୍ୟ ଥାଳ ।
ଦିଗନ୍ତ ବିସ୍ତୃତ ନୀଳାମ୍ବୁ ଚିଲିକା
ଚିଲିକା ଲହରେ ରଶ୍ମି ଆଲେଖିକା ।

ନାଶି ଭେଦି କିବା ଉଚ୍ଛଳ ଲହରୀ
ଏପାରେ ସେପାରେ ଯାଉଛି ସନ୍ତରି ।
ସବିତା କନକ କିରଣ ଧଉତ
ଚିଲିକା ବିତାନ ମାଧୁରୀ ପୂରିତ ।

ଘାଲେରୀ ସୋଲରୀ ଜଠିଆ ଗହନେ
ପୂର୍ବାଶା ବଧୂର ଜ୍ୟୋତି ଶ୍ରୀଅଙ୍ଗନେ ।
ଭ୍ରମର ଭ୍ରମରେ ବସି କଳି ଚୂଳେ
ଭ୍ରମ ବୁଝି ଫେରେ ପଦ୍ମସର କୂଳେ ।

ପତତ୍ରୀ କାକଳୀ କୋମଳ ଲଳିତ
ପ୍ରେମର କି ଅବା ଧ୍ୱନି ରସାପ୍ଳୁତ ।
ସାଇକ ପଲ୍ଲୀରେ ପଡ଼ିଛି ଚହଳ
ପ୍ରଭାତ ଆଗମେ ପରାଣ ଚଞ୍ଚଳ ।

ଗ୍ରାମୁଁ ଗ୍ରାମେ ଏବେ ସମ ଯୋଦ୍ଧୃଗଣ
ଫୁଲିଛନ୍ତି ଯୁଦ୍ଧ କରି ଆଚରଣ ।
ଦୁର୍ଭେଦ୍ୟ ଅଭେଦ୍ୟ ବଙ୍କାଡ଼ ବିଶାଳ
ଭଗ୍ନଗିରି ଦୁର୍ଗ କାହିଁ ଅସମ୍ଭାଳ ।

ଗିରିଦୁର୍ଗେ ଗଡ଼ ନୀଳାଦ୍ରୀ ପ୍ରସାଦ
ଅଗମ୍ୟ ଦୁର୍ଗମ ଅରଣ୍ୟ ବିଶଦ ।
ଅସ୍ତ୍ରଶସ୍ତ୍ର ଭରା ଭଣ୍ଡାର ପାହାଡ଼
ଦମ ଦମ ପଡ଼ି ଉଠୁଛି ବଙ୍କାଡ଼ ।

ଢାଲ ତଲୁଆର ବାରୁଦ କଟାର
ବର୍ଚ୍ଛା ନଳୀ ଆଦି ସମର ସମ୍ଭାର ।
ଗୁଳିଛନ୍ତି ସେନା ବୀରେ ଦଳେ ଦଳେ
ଲୁଚି ଗିରି ଖୋଲେ ଲୁଚି ତରୁତଳେ ।

ଫିରିଙ୍ଗି ସହିତ ସମ୍ମୁଖରେ ରଣ
ଅବା କେବେ ଲୁକ୍କାୟିତ ଆକ୍ରମଣ ।
ସରକାରୀ ରକ୍ଷୀ ପୋଲିସଙ୍କ ହାଲେ
ହେଘଗଉ କରନ୍ତି ପାଇକେ କୌଶଳେ ।

ଥାନା ଫାଣ୍ଡି ଯେତେ ଅଫିସ ବଙ୍ଗଳା
ପାଇକ କରନ୍ତି ନିତି ପୋଡ଼ାଜଳା ।
ସରକାରୀ କର ଖଜଣା ଗୁଳନ
ହେଲା ଅସମ୍ଭବ ଫିରିଙ୍ଗି ଆସ୍ଥାନ ।

ଗୁପତରେ ଗୁପ୍ତ ଅସ୍ତ୍ର ଆୟୋଜନ
ପାଇକ ପକ୍ଷରୁ ପ୍ରତିଶୋଧ ଘନ ।
ମାତିଛନ୍ତି ବୀରେ ସ୍ୱଦେଶ ବସ୍ତଲେ
ନାଶିବେ ଏ' ଦେଶୁ ଫିରିଙ୍ଗି ସମୂଳେ ।

ଟେକ ରଖି ଆଗେ ଦେଶ ଜାତିମାନ
ଚଳାଇ ଅଛନ୍ତି ମହା ଅଭିଯାନ ।
କୋଳାହଳେ ପୂର୍ଣ୍ଣ ବସ୍ତୀ ଶିବର
ଶିବର ପ୍ରହରୀ ନଗତ ଅସ୍ତ୍ରେର ।

ଏହି ଫିରିଙ୍ଗି ତ କରିଛନ୍ତି ଚୂନା
ସେହି ଦର୍ଶେଇ ବନଭୂମି ସୁନା ।
ଗ୍ରାମ ପୁଞ୍ଜି ଦୃଢ଼ ଆସନ ବ୍ୟବସ୍ଥା
ଆଜି ଭଜିଅଛି ପତନ ଅବସ୍ଥା ।

ପ୍ରଜାପ୍ରିୟ ଚିର ନଳପତିଙ୍କର
ଐତିହାସିକ ଏ' ଦେଶ ସର୍ବସାର ।

ଜାଗିରି ନିଲାମ, ବନ୍ଧା ବନ୍ଦୀ ଆଦି
କେତେ ରକମର କୂଠ କାରସାଦୀ ।
ବଡ଼ ଜାଗିରିର ସ୍ୱତ୍ୱ ଅବସାନ
ଶତ ଜାଗିରିର ବାଜ୍ୟାପ୍ତି ବିଧାନ ।

ପରମ୍ପରାଗତ ସାମରିକ ଶିକ୍ଷା
ଚୂର୍ଣ୍ଣୀଭୂତ କରି ଦିଆଗଲା ଦୀକ୍ଷା ।
ପାଇକର ପୁଅ କାଳେ ଅନ୍ନରାଲେ
ପଡ଼ି ଫିରିଙ୍ଗିର କୂଠ ମାୟା ଜାଲେ ।

ଏହି ଦେଶୁ ପୁଣି ନ ଥାଇ ସରମ
ବାହାରିଲେ ଦଳେ ନିମକ ହାରାମ ।

ସ୍ୟନ୍ଦିନୀ କର୍ପୂର ଧବଳ ଧରଣୀ
ଗିରିପଦ ଦେଶ ସଂଙ୍କଠ ସରଣୀ ।
ଚିଲିକା ପୁଳିନ ବାଲି ସ୍ତୂପାବଳି
ଶୈବାଳ ଶୋଭିତ ହେମକୁଣ୍ଡ ଜଳ ।
ସ୍ଥାନେ ସ୍ଥାନେ କାହିଁ ଭୁଙ୍ଗ ବାଲିସ୍ତୂପ
ବ୍ୟକ୍ତ କରେ ଶୂନ୍ୟେ ଅନାମସ୍ଥ ଧୂପ ।
ପର୍ବତେ ପର୍ବତେ ବିଜୟ ସଂକେତ
କନ୍ଦରେ କନ୍ଦରେ ଶିଙ୍ଗା ସମବେତ ।

କନ୍ଦରୁ କନ୍ଦରେ ସଙ୍କଟୁ ସଙ୍କଟେ
ଦୁର୍ଗପଥ୍ ଦୂରେ ଅଥବା ନିକଟେ ।
ଧୂଳିଚ୍ଛନ୍ନ ସେନା କାହିଁ ଦଳ ଦଳ
ଅଗ୍ରେ ପାଠଶାଣୀ ସପ୍ତସିନ୍ଧୁ ବଳ ।
ଗତିଶୀଳ ସେନା ବ୍ୟୂହ ପରିକ୍ରମ
ସଂଘର୍ଷଣେ ଆସେ କି ଉପମା ଭ୍ରମ ।
ଅବାରିତ ସେନା ସିନ୍ଧୁ ସମ ସେବେ
ଅଶ୍ୱ-ମୀନ ନୃତ୍ୟରତ କେବେ କେବେ ।

ଶ୍ୱେତ ଘୂମର କି ଊର୍ମି-ଫେନ ସ୍ୱଚ୍ଛ
ଧନୁଶର କିବା ସାଙ୍କୁଚର ପୁଚ୍ଛ !
ଦାଢେଯରକ କିବା କୁମ୍ଭୀର ସାଗରେ
ତମ୍ଭୁ କି ବୋଇତ ଭାସୁଛି ଲହରେ?
ଯୁଦ୍ଧ ହେଉଅଛି ଦିବା ବିଭାବରୀ
ସାଇକେ ଫେରିଙ୍ଗେ ଆଣୁଛନ୍ତି ଧରି ।।

ଜମାଦାର କଏ, କଏ ସୁବାଦାର
ଲାଲ ପଗଡ଼ିକ କଳା ହୁଏ ଦ୍ୱାର ।

ପାଇକ ଫେରିଙ୍ଗି ଯଥା ବ୍ୟାଘ୍ର, ମାନ,
ଭୁଜଙ୍ଗ ନକୁଳ ପରସ୍ପର ଛିନ୍ନ ।
ମନ୍ଦ୍ର ତାଳେ ତାଳେ ଉଠେ ଶିଙ୍ଗା ବାଜି
କଦମେ କଦମେ ଉଠେ ନଚି ବାଜୀ ।
ଗିରି ଚୂଳେ ଶୁଭେ ରଣ ଭେରୀନାଦ
ସେ ନାଦେ ପ୍ରସରେ ସମର ସମ୍ବାଦ ।
ବ୍ୟାପିଛି ଫିରିଙ୍ଗି ଏ' ଦେଶ ମୁଲକେ
ବିତାଡ଼ିତ ହେବାପାଇଁ ସେ ପଲକେ ।

ଅଗ୍ରସର ସେନା ଅଳପ ଇଙ୍ଗିତେ
ପାଇକ କୁଳର ସମର-ସଙ୍ଗୀତେ ।
ପାଟେଶାଣୀଙ୍କର ପଟ୍ଟ ଶିଷ୍ୟ କାହିଁ
(୧)ଲୋଚନା ସର୍ଦ୍ଦାର ଆଗେ ଯାଏ ଧାଇଁ ।
ଭେଦି ଗିରିବନ ବାଲୁକା ବିତାନ
ନାଗଚ କରୁଛି କି ଶାସ୍ତ୍ର ବିଧାନ ।
ଚଣ୍ଡ୍ରଯୁଦ୍ଧେ ଚଣ୍ଡ ସୈନ୍ୟ ଦଳ ରୁଣ୍ଡ
ଅସିଘାତେ ଛେଦି ଗଲେ ଶତ୍ରୁ ମୁଣ୍ଡ

କାଳୀଯାତ୍ରୀ ବିରଜାଯାତ୍ରୀ ବନବାସୀ
ଫିରିଙ୍ଗିରେ ଆଜି ଯାଉଛନ୍ତି ଘାସି

୧। ଇଂରେଜମାନଙ୍କ ସହିତ ପାଇକମାନଙ୍କର ବିଦ୍ରୋହରେ ଲୋଚନା ସର୍ଦ୍ଦାର ପାଟଣାଣୀଙ୍କର ଅନୁଗତ ଥିଲା ।

ବରୁଣେଇ ବାସୀ ବୀରକୁଳ ଜାତ
ଉଦ୍ଧତ ପାଇକ ଆଜି ଉତ୍ପାତ ।
ଭଗବତୀ ପୀଠ ଧନୁଶର ଧାରୀ
ନରତ ଦୁର୍ଭେଦ୍ୟ ବନପଥଗ୍ଚାରୀ ।
ଯୁବକ-ବଭୂତି ଅନନ୍ତ ବ୍ରକାଶ
ଭାଷା କବା କରି ପାରିବ ପ୍ରକାଶ ।

ଖଣ୍ଡାହଣ୍ଡାଖୋଲ-ବାସୀ ଖଣ୍ଡାୟତ
ଆଜି ଏକ ପ୍ରାଣେ ଐକ୍ୟ ତାନେ ମତ୍ତ ।
ରଣରଙ୍ଗା ରଣଶଙ୍କା-ହୀନ ଜାତି
ଭାଗ୍ୟେ ଯା'ର ଚିର ଜୟ ଲେଖା ଭାତି ।
ଶତପଲ୍ଲୀ ପୂରୁଁ ଶତ ମହାବୀର
ଶିରୋଧାର୍ଯ୍ୟ କରି ପାଟଶାଣୀ ଗୀର—
କ୍ଷ ଦିବସ ନିଶି କରନ୍ତି ସଂଗ୍ରାମ
ସଦା ମତ୍ତ ରଣେ ନାହିଁଟି ବିଶ୍ରାମ ।

ଚିଲିକା ପୁଳିନେ ମାଳକ ଶିବିର
ପ୍ରତି ହସ୍ତେ ସୁଶୋଭିତ ଧନୁ୍ତୀର ।
ସଂକଟେ ଶଇଳେ ଗିରିଭୁଙ୍ଗ-ଶିଖେ
କ୍ଷଏ ବରଷଇ ଶାଣିତ ବିଶିଖେ ।
ଦିଗଙ୍ଗନା-ବଧୂ-ମୁକୁର ଚିଲିକା
ମୁଖ ଦେଖେ ଯହିଁ ଭୂଧର ବୀଥିକା ।
ବାଳ ବୀଚି ଶୁଭ୍ର ଫୁଲ୍ଲକିତ ଦେଶ
ଚୁତ ନାଟେଶ୍ୱର ଯା'ର ତନୁ ବେଶ ।

ନିତ୍ୟ ନାଗେଶ୍ବର ଗନ୍ଧ ସୁରଭିତ
ଅମ୍ଳାନ୍ ବାଲୁକା ଶୁକ୍ତି ଢାଉଳିତ ।
ତାଳବନ ଶ୍ୟାମକୁଞ୍ଜ ବିଶୋଭନ
ଦେବୀ ଭଗବତୀ ପୀଠ ଚିରନ୍ତନ ।
ତୁଙ୍ଗ ନାରିକେଳ ତାଳ ଗୁଚ୍ଛା ଘନ
ବାରମାସ ଯହିଁ ଲୀଳା ସୁଶୋଭନ ।
ପ୍ରତି ଅଞ୍ଚଳରୁ ଆସନ୍ତି ପାଇକେ
ଦେଶଜାତି-ପ୍ରୀତି ବିହ୍ବଳ ରସିକେ ।

ନୀଳ ହ୍ରଦ ମଧ୍ୟେ ଶ୍ୱେତ ଦରପଣ
ସମ ପାରିକୁଦ ଉଜ୍ଜ୍ୱଳ ରତନ ।
ହ୍ରଦ ବଧୂ ଗଳା ଦୁର୍ଲ୍ଲଭ ପଦକ
ପାରିକୁଦ ଖଣ୍ଡ ବେଷ୍ଟିତ ଉଦକ ।
ମଲ୍ଲିଭାଲପଠେ ଲେଖା ଗଉରବେ
ପୂରିତ ମାଲୁଦ ବୋଇତ ବିଭବେ ।
ପୁନ୍ନାଗ ବନାନୀ କୁଞ୍ଜ ସମାକୁଳ
ଦ୍ୱୀପମାଳେ ଭଗ୍ନ ଚିଲିକାର କୂଳ ।

ଦଳେ ଦଳେ ସର୍ଗ ହେଲେ ସଙ୍ଘୀଭୂତ
ସର୍ବେ ରଙ୍କାଙ୍ଗନ ପଥ ଅନୁସୃତ ।
ହରିତାଭ୍ରୁମାନ ଚିର ଶ୍ୟାମ ପଲ୍ଲୀ
ଶସ୍ୟ କ୍ଷେତ୍ରେ ଯହିଁ ଝଙ୍କାରଇ ଝିଲ୍ଲୀ ।
କୁରଙ୍ଗୀ କୁରଙ୍ଗ ଯହିଁ ନିଶିଭାଗେ
ଶସ୍ୟ ଚୁରି କରି ପଳାନ୍ତି ଆବେଗେ ।

ସଂଖ୍ୟାତୀତ ପଲ୍ଲୀ ପାଇକ ମଣ୍ଡଳୀ
ପାଇକ ଆଖଡ଼ା ଚିର ଲୀଳା ସ୍ଥଳୀ ।

ଗିରି ଖୋଲ ଗିରିପଦ-ଶୋଭୀ ଗ୍ରାମ
ଚିର ଖଣ୍ଡା ଖେଳ ସେନା ରଥୀ ଧାମ ।
ବନ କୃଷ୍ଣସାର ଚିର ଲୀଳା ସ୍ଥଳ
ଦିଗନ୍ତ ବିସ୍ତୃତ ସିକତା ଅଞ୍ଚଳ ।
ଏ ସକଳ ପଲ୍ଲୀ କ୍ଳାନ୍ତ କୃଷକର
ପୃଷ୍ଟ-ସ୍ୱର୍ଣ୍ଣ ଶସ୍ୟ-ରତ୍ନେ ମନୋହର !
ସ୍ନିଗ୍ଧ ଛବି ଯା'ର ପାନ୍ଥ ପ୍ରାଣହାରୀ
ବିଶ୍ୱଜନ ମନେ ଆନନ୍ଦ ସଂଚାରୀ ।

ଶୂନ୍ୟ ନଭ ଦୋଳ ବିଶୋଭିତ ଯହିଁ
ପକ୍ଷୀ ଦଳଦଳ ଶୁଭ୍ର କରି ମହୀ ।
ଊଷାଉଦ୍‌ବୋଧିତ ଭରଡିଆ ଗାନ
ଯହିଁ ଭାଙ୍ଗୁଥାଏ କୃଷକ ଶୟନ ।
ବନବଧୂ ପିକ ଯହିଁ ବାରମାସ
ଦିଏ କର୍ମକ୍ଳାନ୍ତ ଜନେ ଅବକାଶ ।
ରଜତ ସାଳିଆ କଳ ବେଣୁ ଧ୍ୱନି
ଯହିଁ ମୁଗ୍ଧ କରେ ନିର୍ଜନ ସରଣୀ ।

ତରୁ ପର୍ଣ୍ଣ ଦୋଳୀ ସୁପ୍ତ ବିହଙ୍ଗମ
ଯହିଁ ଦ୍ରୁମ କୁଂଜେ କରେ ମନୋରମ ।
ଏ ସକଳ ପଲ୍ଲୀ କରି ଜନ ହୀନ
ସଂଗ୍ରାମେ ସରବେ ହେଲେ ଅବତୀର୍ଣ୍ଣ ।

ବୀର ପ୍ରସବିନୀ ଏ ପାଇକ ଖଣ୍ଡ
ଆଜି ଚଳାଇଛି ସମର ପ୍ରଚଣ୍ଡ ।
ଏ ସାରା ଅଞ୍ଚଳୁ ପାଇକ ବାହିନୀ
ଚଳାଇଲେ ଯୁଦ୍ଧ ପ୍ରାଣ ତୃଣ ମଣି ।

କେତେ ମଲେ କେତେ ହେଲେ ଅଧାମରା
ଛିନ୍ନ ଭିନ୍ନ ଅଙ୍ଗ ଖଣ୍ଡିଆ ଖାବରା ।
କିଏ ସ୍ୱାର୍ଥପର ନିମକ ହାରାମ
କରଇ ଫିରିଙ୍ଗି ଶିବିରେ ବିଶ୍ରାମ ।
କିଏ ପୁଣି ଧନ ପଦବୀର ମୋହେ
ଶତ୍ରୁ ସାଥେ ହାତ ମିଳାଇଲା ସ୍ନେହେ ।
ଭଲ ଭେଲ ସିନା ହେଲା ପରୀକ୍ଷିତ
ସ୍ୱର୍ଣ୍ଣ ଆଉ ଲୌହ ଗୁଣ ପ୍ରମାଣିତ ।

ଘଟାଇଲେ ଯାହା ବିଘ୍ନ ଦୁରନ୍ତରେ
ପଟାନ୍ତର ତାର ନାହିଁ ଭୁବନରେ ।
ଇତିହାସ ସିନା ମୂକ ଭାଷା ଭୁଲେ
କହେ ସେହି ଗାଥା ଚିଲ୍‌କାର କୂଳେ ।

ମାଳ ସାତକୋଶେ ଯେତେ ଯେତେ ବୀରେ
ବାନ୍ଧନ୍ତି ପଗଡ଼ି ପାଠଶାଣୀ ଶିରେ ।
ପାଠଶାଣୀ ଜୟ ପାଠଶାଣୀ ଜୟ
ପାଠଶାଣୀ ଯୋଗୁଁ ନାହିଁ ଆଜି ଭୟ ।

ଜୟ ଶିଙ୍ଗାନାଦେ ପୂରିତ କାନନ
ବୀର ମଦେ ଦୀପ୍ତ ବୀରର ଆନନ ।

ସୋଲରୀ ଭାଲେରୀ କୁଟିଳ ସଂକଟେ
ଘଣ୍ଟଶିଳା ପଦ ଦେଶ ସନ୍ନିକଟେ—
ନାଚନ୍ତି ପାଇକେ ବାଜଯନ୍ତ୍ର ଗୌରବେ
ପାଠଶାଣୀ-ରଣ କୌଶଳ-ବିଭବେ ।
ଭେରୀ ତାନୁ ପୁଣି ଶୁଭେ ଭେରୀତାନ
ସାର୍ଥକ ହୋଇଛି ଆଜି ଅଭିଯାନ ।
ତୁଙ୍ଗ ବୀଚି ସହ ନାଚେ କାହିଁ ପୋତ
ସେ ତ ପାଇଁ କିବା ଜଳୋଦ୍‌ଗାରୀ ସ୍ରୋତ ।

ତେହେନ ତାଡନା ସହି ସାଧନାର
ସାଧକ ଜୀବନ ହୁଏ ମହତ୍ତର ।
ସଂଯମର ପଥେ ପଥିକ ଯେ ଜନ
ସେହି ପାଠଶାଣୀ ପଦର ଭାଜନ ।
ପଠାନ୍ତର ତାର ସେ ବୀର ଲେଚନା
ଶତ୍ରୁ ଶାସକର ମାନେ ନାହିଁ ମନା !
ଫିରିଙ୍ଗି ସୈନ୍ୟଙ୍କୁ ବିତାଡ଼ି ଏ' ଦେଶୁ
ମୁକ୍ତ କରି ଦେଶ ଦାସତ୍ୱର କ୍ଳେଶୁ—

ଜରାଜୀର୍ଣ୍ଣ ଭାବେ ହେଲେ ମହୀୟାନ,
ସ୍ୱଦେଶ ମାତୃକା ସେବାରେ ମହାନ ।
ମର ଜଗତରେ ହେଲେ ମୃତ୍ୟୁହୀନ
ସାଧାରଣ ମଧ୍ୟେ ସେ ଅସାଧାରଣ ।



# ପଞ୍ଚମ ସର୍ଗ

( ରାଗ-ବଙ୍ଗଳା ଶ୍ରୀ )

ପ୍ରଦୋଷ ପାଠେଳ ବାଲ୍ୟ ଅରୁଣିତ
ଅମ୍ବର ଗୋଧୂଳି ରାଗ
ଅନନ୍ତ ବିସ୍ତାରେ ସଜାଇଛି କାହିଁ
ପଶ୍ଚିମାଶା ବଧୂ ଭାଗ ।

ରଜତ ଚିଲିକା- ତଟ ଦେଶେ ଦେଶେ
ପରଶି ଭାଲେରୀ ନାସି,
ବୁଡ଼ି ବୁଡ଼ି ଯାନ୍ତି ବିଦାୟ ଲଗନେ
ଭାନୁ ଅସ୍ତାଚଳବାସୀ ।

ପାହାଡ଼ ବିପିନ କେତକୀ କାନନ
ଶ୍ୟାମ ବୃକ୍ଷକୁଞ୍ଜ ମାଳେ,
ଗୋଧୂଳି-ରଙ୍ଗିମା ବୀଚିକ ଉଚ୍ଛୁଳ
ପଡ଼େ ଆକାଶର ଗାଲେ ?

ଦିଗନ୍ତ ବିସ୍ତାରେ ପ୍ରଣୟ ବ୍ୟାପାରେ
ଖେଳାଇ କଳିକା ଚୂଳ ।
ଚିଲିକା ସେପାରି ମରୁତ ଏପାରି
ବହେ ଗନ୍ଧ କରି ଠୂଳ ।

ଧାର ପଲ୍ଲୀ ପରେ ପଡ଼ିଛି ଚହଳ
ବିଜୟ ଶବଦ କାହିଁ,
ପଞ୍ଝୁଆ ରଜାର(୧) ସୁବର୍ଣ୍ଣ ରଜୁଛି
ନାହିଁ ନଥିବ ତ ଭାଇ ।

ଶିଳା ସଇକତ ବାଲି ବନପଥ
ତୁଙ୍ଗ ଚୂଡ଼ା ହେମ ଗିରି,
ଧରେ ଆଜି, କିବା ଭରି ଗିରି ଗ୍ରୀବା
ପ୍ରବାଳ ସ୍ଫଟିକ ଶିରୀ,

ସେନାପତି ପଦେ ପାଇକ ସମାଜେ
ପାଠଶାଣୀ ଅଶ୍ୱାରୋହୀ,
ବିଜୟ ଉଲ୍ଲାସେ ବୁଲୁଛନ୍ତି ସର୍ବ
ମଥାରେ ମୁକୁଟ ବହି ।

କଦମ୍ କଦମ୍ ଚାଲୁଛି ତୁରଗ
ସୋଲରୀ ଚାଲେରୀ ମାଳେ,

---

୧ । ପାଇକ ବିଦ୍ରୋହ ସମୟରେ ବିଦ୍ରୋହୀମାନେ ପଞ୍ଝୁଆ ନାମକ ଜଣେ ଯୁବକକୁ ବାଣପୁରର ରାଜପଦରେ ବସାଇ ଥିଲେ ।

ତାରୁଟିଏ ଉଠି      ତାରୁପାଖେ ଖେଳେ
ଲୁଚକାଳି ଚନ୍ଦବାଲେ ।

ତରୁଣ ବଳାସେ      ମତ୍ତ ଅଭିଳାଷେ
ଜୟ୍ନ ବିଜୟପୁର ମୋହେ
ତରୁଣ ପରାଣ      ଯୁଗେ ଯୁଗେ ଯିନା
ଭରି ଉଠୁଥାଇ ଦ୍ରୋହେ ।

କଦମ୍‌ କଦମ୍‌      ଘୁଲୁଛି ତୁରଗ
ଘୋଲରୀ ଭୁଲେରୀ ବାଙ୍କେ
ସେହି ଏକା ଯିନା      ଆଙ୍କି ପ'ରେ ଦୃଶ୍ୟ
କଳାଗ୍ରହୁ ଯେହ୍ନ ଆଙ୍କେ

ମସ୍ତକେ କରୀଟ      ସାଥେ ବ୍ବ କବଚ
ସାଜି ପାଟଣାଣୀ ବୀର,
(୨) ଫଭୁରୀ ପଞ୍ଚୁଆ      ଗୃହକେ ଉସ୍ତାହେ
କରନ୍ତି ସନ୍ଧାନ ତୀର ।

ମୁଦିର ଧବଳ      ଫିର ସିକତିଳ
ଚପଳ ଚିଲିକା ପ୍ରାନ୍ତ
ଆଜି ଚଉଦିଗେ      ମହୋତ୍ସବ କାହିଁ
ହୃଦେ ଭ୍ରମଇ ବୋଇତ,

---

୨ । ପଞ୍ଚୁଆ ନାମ ମାତ୍ର କେତେକ ଦଳ ପାଇଁ ରାଜା ଦେଉଥିଲେ । ସେଣୁ ପରେ ତାଙ୍କୁ ଫଉଜ ପଞ୍ଚୁଆ ଅଶ୍ୟା ଦିଆଯାଉଥିଲା ।

ତରଳ କମ୍ପନେ  ସୁନୀଳ ଗଗନେ
ତରଳ ତାରକା ମନ୍ତ୍ର
ଜାଳୁଛନ୍ତି କବା  ପାଠଣାଣୀ ପଥେ
ଅମର ଅଲିଭା ବତୀ।

ହେମନ୍ତ ମରୁତେ  ଲହରୀ ଭଙ୍ଗିତେ
ପ୍ରବାସୀ ବୋଇତ ଚଳେ
ତଟେବେଠ ପାଣେ  ଯାଏ କହି କହି
'ନସ୍ମୃତି ଜୀବନେ ଫଳେ'।

(୩) ଶ୍ରେତଙ୍କ ଗଡ଼ର  ପଞ୍ଚୁଆ ଗଉଡ଼େ
ସଜାଇ ବକସି ବେଶେ
ଗାଁ ଗାଁ କରି  ବୁଲଇ ଆଖନ୍ତ
ପାଠଣାଣୀ ଯୁଦ୍ଧ ଶେଷେ।

ଫିରିଙ୍ଗି ପଳାଏ  ଆତଙ୍କ ତରାସେ,
ନିଷ୍କଣ୍ଟକ ଏ ମୁଲକ
ପାଠଣାଣୀ ଲାଗି  ଦଶା ବିପର୍ଯ୍ୟସ୍ତ
ଫିରିଙ୍ଗି ତ ପଳାତକ।

---

୩। ସ୍ୱାଧୀନ ଓଡ଼ିଶା ନରପତିମାନଙ୍କର ପ୍ରଧାନ ସେନାପତି ଶ୍ରେତଙ୍କ ଗଡ଼ରେ ବାସ କରୁଥିଲେ। ପ୍ରଧାନ ସେନାପତିଙ୍କର ପଦସ୍ଥ ସ୍ଥଳ—ବକ୍ସି।

ଯୁଦ୍ଧ ହେଲା ସତ ଫିରିଙ୍ଗି ଦମନ
ଲୋକେ ସନ୍ଦେହର ଜାଲେ,
ଆଶଙ୍କା କରନ୍ତି କାହାକୁ ସେମାନେ
ଧରି ନେବେ ପଛ ଆରେ ।

ବକ୍ସି ବୀରବର ନିରୁଦ୍ଦେଶ ଏବେ
ନାହିଁ ତାଙ୍କ ଖୁହ୍ନା ଦେଖା,
ପାଠଶାଣୀଙ୍କର ସମୁନ୍ନତ ଭାଲେ
ଚିନ୍ତାକୁ କୁଟିଳ ରେଖା

ଗ୍ରାମେ ଗ୍ରାମେ ଏବେ ପଡ଼ିଅଛି ହୁରି
ଫିରିଙ୍ଗେ ବିନାଶ କରି,
ବକ୍ସି ମହାରାଜା ଶାସନ କରନ୍ତି
ରାଜ୍ୟ ଜନ୍ମୁ ଅନୁସରି ।

ପାଲଙ୍କିରେ କାହିଁ ଗୁପତେ ବସାଇ
ପାଞ୍ଚୁଆ ରଉଡ଼େ ଦଳେ,
ବୀର ପାଠଶାଣୀ ଏମନ ପ୍ରଘୁର
କରାଇଲେ ପଲ୍ଲୀମାନେ ।

ସେହିଦିନୁ ଏରା ଏ ସାରା ମୁଲକେ
କଥା ଅଛି ପ୍ରଚଳିତ,
ପାଞ୍ଚୁଆର ନାମେ ପାଞ୍ଚୁଆ ଫଉରୀ
ହେଲା ନୋଦ୍ଧ ପ୍ରବର୍ତ୍ତିତ

ଏବେ ମଧ୍ୟ ଲୋକେ ଝୁରିଝୁରି ଦେଖି
ହୋଇଥାନ୍ତି କୁହାକୁହି
ପଞ୍ଝୁଆ ଫକୁରୀ ହୋଇଅଛି ଦେଶେ,
ପଞ୍ଝୁଆ କ ରାଜା ହୋଇ ।

ଅକାରଣ ହେଲା ସେନା ପଲଟଣ
ଫିରିଙ୍ଗି ଫଉଜ ସରା
ଭଲେରୀ ସୋଲେରୀ ପ୍ରାକୃତିକ ବ୍ୟୂହେ
ଫିରିଙ୍ଗି ହୁଅନ୍ତି ଧରା ।

ବୀରର ବୀରତ୍ୱ ଜୀବନ ମହତ୍ତ୍ୱ
ଜଣାପଡ଼େ ସିନା ହେଲେ
ସ୍ୱଦେଶ ସ୍ୱଜାତି ଅନାବିଳ ପ୍ରୀତି
ରକ୍ଷା କରିବାର ବେଳେ ।

ବୀରର ମହତ୍ତ୍ୱ ପ୍ରତି ବୀର ପ୍ରୀତି
ପରୀକ୍ଷା କରିବାପାଇଁ
ଦେଶକାଳ ଜାତି ଅବସ୍ଥାହିଁ ଏକା
ଯୁଗେ ଯୁଗେ ହୁଏ ଦାୟୀ ।

ଫିରିଙ୍ଗି ଚରଣେ ଉଡ଼ାଇ ସ୍ୱିକଟ
ଗ୍ଭଲିଥାନ୍ତି ପାଟଶାଣୀ
ସ୍ୱାହାଣୀ ଚମକେ ହୃଦୟ ସ୍ପନ୍ଦକେ
ଫୁଟୁଥାଇ ବୀରଠାଣି ।

ବୀର କୁତୂହଳ କର୍ମ କଉଶଳ
ଫୁଟେ ବୀର ଅଙ୍ଗେ ଅଙ୍ଗେ
ଅତଳ ବାରିଧି ଜଞାପତ୍ରେ ହେଳେ
ବେଳା ଦ୍ୱାର ବୀଚି ଭଙ୍ଗେ ।

ଅଶ୍ୱ ଦଉଡ଼ାଇ ଚିଲ୍‌କାର କୂଳେ
ଗହନ ସିକତା ପୂରେ
ବିଜୟ ଢୁଲକେ ନଜର ମୂଲକେ
ଯାଉଛନ୍ତି ଦୂରେ ଦୂରେ ।

ଏତେଦିନେ ଦେଶ ପାଇକ ମୁଲକ
ହୋଇଛି ନିରୁପଦ୍ରବ
ଫିରିଙ୍ଗି ଫେରିଛି ଅପମାନ ପାଇ
ପାଇକର ଗଉରବ ।

କିଏ ଜାଣିଥିଲା ପାଟେଶାଣୀ ପରି
ମୁଅ ବିଷାଦରୁ ଉଠି
ଠୁଳ କରିଦେବେ ଦେଶଜାତି ପୁଏ
ଫିରିଙ୍ଗେ ସମରେ ଭେଟି ।

ଯାହାର ଆତଙ୍କ ସୁହାଣୀ ଚମକେ
ଥରିଗଲା ସେ ଅସ୍ତ୍ରେ
ତା' ଅସ୍ତ୍ର ଲେଖନୀ ରକତ ମସୀରେ
ଲେଖିଲା ଅମର କୀର୍ତ୍ତି ।

ଗଳାଡ ଚନ୍ଦ୍ରିକା ଚକୋରେ ନଗୁଇ
ଶିଳା ପରେ ଯାଏ ନାଚି,
ଘଣ୍ଟଶିଳ ବଣେ କା'ର ଅନ୍ୱେଷଣେ
ଫଲଫଳ ପଡ଼େ ପାଚି ।

ମକରନ୍ଦ ସୁଧା ଧାର ଗଙ୍ଗାସମ
ପାଠଶାଣୀ ହୃଦେ ବହେ
ଯେଉଁ ସୁଧାଝର ପୃଥ୍ୱୀ ଶଇବଳ
ସାଗର ସରିତେ ରହେ ।

ଯେଉଁ ସୁଧାଧାର ପରାଣୁ ପରାଣେ
ପ୍ରବାହିତ ଚିରନ୍ତନ
ଯେଉଁ ଧାର ବହି ମଣିଷ ମଣିଷେ
ଏକତ୍ର କରେ ବନ୍ଧନ ।



# ଷଷ୍ଠ ସର୍ଗ

ବିଶାଳ ସୋଲରୀ ଚିଲିକା ଭିଲେରୀ
ପାଇକ ମୁଲକ୍‌ ଫିରିଙ୍ଗେ ଚଢ଼ି
ପାଇକ ସେନାନୀ ପାଠଶାଣୀ ଦଳ
ଦ୍ରୁତ ସ୍ରୋତ ସମ ଯାଆନ୍ତି ବଢ଼ି ।

ପାଠଶାଣୀ ପରି— ଗୁଳିତ ପାଇକେ
ବିଜୟୀ ବିକ୍ରମେ ଗୁଳନ୍ତି ମାଡ଼ି
ଖୋର୍ଦ୍ଧା ଅଭିମୁଖେ ବିଜୟ ଉତ୍ସାହେ
ପଥେ ପଥେ ନିଜ କୀରତି ବାଢ଼ି ।

ବକ୍ସି ଜଗବନ୍ଧୁ ସେନା ଶିବିରରେ
ଯୋଗ ଦେବା ପାଇଁ ବିଜୟୀ ଦଳ
ଉଡ଼ାଇ ବିଜୟ ଚିହ୍ନ ନିର୍ଭୟେ
ଯା'ନ୍ତି ପାଠଶାଣୀ ପାଇକ ଦଳ ।

ଛାଡ଼ି ଦମ୍ ଦମ୍              କଦମ୍ କଦମ୍
ଚାଲନ୍ତି ଚିକ୍କଣ ବାଜୀ ତ୍ୱରିତ
ବାଜୀ ପରେ ସାଜି              ସେନାପତି ବସେ
ମୁକୁଟ ପଗଡ଼ି ଶିରେ ଶୋଭିତ ।

ଦଳ ଦଳ ଛାଡ଼ି              ସଙ୍ଘୀଭୂତ ହୋଇ
ଚାଲନ୍ତି ଆଗକୁ ଆଗକୁ ମାଡ଼ି
ବୀର ହସ୍ତଚ୍ୟୁତ              ବାଣ-ଭୁଜଙ୍ଗ କି
ଖୋଜେ ନେବ ପ୍ରାଣବାୟୁ ଅଳେଡ଼ି ।

ପାଇକ ତୁଣୀର              ଶାୟକ-ଉରଗ
ଫିରିଙ୍ଗର ପ୍ରାଣବାୟୁ ବିନାଶେ,
ଧାଉଁଛି କି ଏବେ              ବଳବନ ତେଣୁ
ସେନାପତି ଶୂଳପାଣି ଆଶିଷେ ।

ନୀରବେ ନାଚତ              ଜାତ ହୁତାଶନ
ଲେଲିହାନ ଶିଖା ଶୂନ୍ୟେ ଉଜ୍ଜ୍ୱଳି
ପୋଡ଼ି ଦେବାପାଇଁ              ଫିରିଙ୍ଗି ଶିବିର
ବେଲୁ ବେଲୁ କାହୁଁ ଉଠୁଛି ଖେଳି ।

ଦେଶୁ ଦେଶେ ଛାଡ଼ି              ଗ୍ରାମୁ ଗ୍ରାମେ ଛାଡ଼ି
ମାଡ଼ି ଚାଲିଛନ୍ତି ବିଜୟୀ ସେନା
ଏତେ ଦିନ ପରେ              ପିଞ୍ଜର ବନ୍ଧନୁ
ମୁକ୍ତ ପାଏ ପକ୍ଷୀ ଉଡ଼ାଇ ଡେଣା ।

ଗିରିବନ କୁଞ୍ଜ ଉପବନ ପୁଞ୍ଜ
ପଥେ ପଥେ କେତେ ଦିଅନ୍ତ ଦେଖା,
ନଦୀ ସ୍ୱଚ୍ଛରୂପା ମୃଦୁ ପ୍ରବାହିନୀ
ଗଡ଼ ଦୁର୍ଗେ ଦୁର୍ଗ ପରିଖା ରେଖା ।

ଶୋଭ୍ ପଟୁଆରେ ଘନ ସମାରୋହେ
ରଣସଜ୍ଜା ବିଭୂଷଣ ସଇନେ
ଜ୍ୱଳନ୍ତ ଆବେଗେ ସମର ସରାଗେ
ରଜତ ହଲିଲା ପୂତ ପୁଳିନେ ।

ବାଲୁକା ବିତାନେ କୁଞ୍ଜ ନିକେତନେ
ମନ ଫୁଲାଣିଆ ସଙ୍ଗୀତ ଗାଇ
ଧାଡ଼ି ଧାଡ଼ି କାହିଁ ଜ୍ୱଳନ୍ତ ସଇନେ
ସ୍ୱଦେଶ ସମର ଡିଣ୍ଡିମ ବାଇ ।

ରଜତ ସଲିଳା ଜଳ ବୀଚି ଲୀଳା
ସାଲିଆ ପୁଳିନ ଉପଳ ପରେ
ପ୍ରଦୋଷ ପାଠଳ ଜ୍ୟୋସ୍ନା ଅବିରଳ
ଅଳସ ଅଳସ ନର୍ତ୍ତନେ ଝରେ ।

କେଉଁ ସେନା ତାର ବିଦାୟର ଗୀର
କହେ ନବ ଯଉବନାର କାନେ
କିଏ ତାର ନବ ବଧୂ କପୋଳରେ
ଚୁମ୍ବନ ଦିଅଇ ପ୍ରଣୟ ଛାନେ ।

କାର ପ୍ରିୟ ବଧୂ      ଫୁଟନ୍ତା ଫୁଲ ମଧୁ
ମଧୁ ମୁଖ ଭରି ଯଉବନର
ନବ ନିବେଦିତା      ପ୍ରୀତି ଆଲିଙ୍ଗନେ
କହେ, 'ସୁଖ କାହିଁ ଅଭାଗିନୀର' ।

ବାତାୟନ ପାଶେ      ବିଦାୟ ଉଚ୍ଛ୍ୱାସେ
ଠିଆରହିଛି କେଉଁ ବର ଯୁବତୀ
ଆଚରଣ କରେ      ଛନ୍ଦ-ଭୁଙ୍କ-ଖସା
ବିଦାୟ ମଳିନା ଫୁଲ ବ୍ରତତୀ ।

ଅଞ୍ଜନ ମଣ୍ଡନା      ଖଞ୍ଜନ ନେତ୍ରୀର
ଅଶ୍ରୁଧାର ଧୀରେ ପଡ଼ିଲା ଗଡ଼ି
ନାରୀମନ କଥା      କହୁଥିଲା ଆହା
ଫିରିଙ୍ଗି ସଙ୍ଗତେ ପଳାନ୍ତା ଛୁଡ଼ି ।

ପଛେ ପଡ଼ିଯାଏ      ନିଜ ଗ୍ରାମ ବନ
ପଛେ ରହିଯାଏ ସାଳିଆ ତଟ
ଘନ ଘଞ୍ଚ ବୁଦା      ରଙ୍ଗ କୋଣଦାର
ଶିବ ଦେବାଳୟ ବେଢ଼ା ନିକଟ ।

ଖୋରଧା ମାଟିର      ବନ୍ଧୁର ଅଧର
ବୀରପିଣ୍ଡେ ଗଢ଼ା ଯା' ବୀରମାଟି
ଦୁର୍ମଦ ଦୁର୍ଦ୍ଧର୍ଷ      ପାଇକ ବାହିନୀ
ଇତିହାସେ କେବେ ନାହାନ୍ତି ହାରି ।

ହେମ ଚମ୍ପାକଳି          ଦିବ୍ୟ ଜ୍ୟୋତି ଝଳି
ଅସୁମାର ଫୁଲ ଫୁଟେ ସେ ବନେ,
ଟିରି ଦରୀଯା'ର          ନୃତ୍ୟ ବାରମ୍ବାର
ମୁଖରିତ ହୁଏ ବିହଗ ସ୍ୱନେ ।

ମାଆ ବରୁଣେଇ          ଦୟା ପାଇ ଯହିଁ
ତରୁଣ ତିଳକ ସମରେ ଚଳେ,
ଦେବୀ ମଥା ବୋଳା          ସିନ୍ଦୂର ଅଭିଷେ
ଯହିଁ ଅସିଧାରେ ପାଇକ ଖେଳେ ।

ଏ ଦେଶୁ ଅଚିରେ          ଫିରିଙ୍ଗି ବିଲୋପ
ସାଧି ବକ୍ସିଙ୍କୁ ପୂଜିବା ପାଇଁ,
ସର୍ବେ ବ୍ୟଗ୍ର ଥାନ୍ତି          ନାହିଁ ତିଳେ ଭ୍ରାନ୍ତି
ଏପରି ଏକତା ନ ଥିବ କାହିଁ !

ପାଠଶାଣୀଙ୍କର          ବିଜୟୀ ପାଇକେ
ପଠୁଆରେ ଆସି ଦଳକୁ ଦଳ,
ଯୋଗ ଦେଉଥାନ୍ତି          ଖୋରଧା ଶିବିରେ
ଦେଖାଇବ ଏବେ ଫିରିଙ୍ଗି ବଳ ।

କେତେ ଯେ ତରୁଣ          ସାଥୀ ଯଉବନ
ଏ ମେଳି ବିଦ୍ରୋହେ ଦିଅନ୍ତି ଯୋଗ,
କିଏ ଅଛି ଭୁଲି          ଅଧର ବଧୂଲି
କିଏ ଭୁଲିଅଛି ଯୌବନ ଭୋଗ ।

କଏ ଭୁଲିଥାଏ  ପିତା ମାତାଙ୍କର
ଭକ୍ତି ବୋଲା ପ୍ରୀତି ପଯୃତ ବସିବା
କଏ ଭୁଲିଥାଏ  ବନ୍ଧୁ ବାନ୍ଧବର
ମଧୁ ଆତ୍ମୀୟର ସ୍ମୃତିକି ଏବା ।

ବୀର ଆଗେ ଦିନ  ଆଜୁତି ମୁକୁର
ତହିଁ ବୀର ପ୍ରାଣ ପ୍ରତିଫଳନ୍ତ,
ବୀରମଦ ଦିନ  ବୀର ଜୀବନର
ଶତ ଗଉରବେ ପରିଗଣିତ ।

ବାଣପୁରୁ ଖୋର୍ଦ୍ଧା  ଯେତେ ଯେତେ ପଥ
କାହିଁ କେଉଁଠାରେ ବିଶ୍ରାମେ ରହି,
ଗିରି ସମ୍ମୁଖୀନ  ଜଳ ନଦୀ ସମ
ଅଚିରେ ବାହିନୀ ଯାଆନ୍ତି ବହି ।

ପାଇକ ପଲ୍ଲୀରେ  କରନ୍ତି ପ୍ରସ୍ତୁର
ହେଉଅଛି ଖୋର୍ଦ୍ଧା ପାଇକ ମେଳି,
ବୀର ବକ୍ସିଙ୍କ  ବାଣ ଠାଣ ପାଡ଼
ଆଚ୍ଛା ଦୂଅ ଭଲେ ପାରିବ ଏଡ଼ି ।

ସୁଦିନେ ଦୁର୍ଦ୍ଦିନ  ନୀତିର ଅଧୀନ
ବିଚିତ୍ର ବିଶ୍ୱ ଏ ସହେ ତାଡ଼ନା
ଦିବା ପରେ ରାତି  ଆସଇ ଅବଶ୍ୟ
ନୁହେଁ କି ଏସବୁ କା'ର ବଞ୍ଚନା ।

ନମିଷ୍ନ ନମିଷେ ହସାଇ ହରଷେ
ମଚ୍ଛର ସମ୍ପଦେ ଖେଳାଇ ସାରି
ସମ୍ପଦ କୂଆରେ ଭଙ୍କା ପକାଇବା,
ନୁହଁଇ କ କା'ର ବଦ୍ଭୂପ ଭରୀ ।

ସୁଯୋଗେ ଦୁର୍ଯୋଗ, ଦୁର୍ଯୋଗେ ଅଯୋଗ
ତୁଷାର ପତନ କମଳ ବନେ,
ବସନ୍ତେ ନଦାଘ, ଲଭରେ ଅଲଭ,
ବଧି ବଡ଼ମ୍ବନା ବାଧେ ସଘନେ ।

ଜଟିଳ ଜଗତେ ମୃତ୍ୟୁ ମରତେ
ଚିରଦିନ ଜୟ ନାହିଁ କାହାର
ଆଜ ଯେ ସମ୍ପଦ— ମନ୍ଦିରେ ଭକତ
କାଲି ସେ ମନ୍ଦିରୁ ହୁଏ ବାହାର ।

ସୁନଶ୍ଚିତ ବୋଲି କିଛି ନାହିଁ ଏଥି
ସୁଖ ଦୁଃଖ ମଧ ନୁହେ ନଶ୍ଚିତ,
ଚିରଦିନ ପାଇଁ ନୁହେଁ କେ ବଜୟୀ
ତା ବଜୟ ଦିନେ ହେବ ବଜିତ ।

କିଏ ଜାଣିଥାଇ— ସୁଖରେ ଅସୁଖ
ଜୟେ ପରାଜୟ ହୋଇଛି ଲେଖା
ହାରିବେ ବଜୟୀ, ଜିଣିବେ ବପକ୍ଷ
ଅଘଟଣ ପୁଣି ହୋଇବ ଦେଖା ।

ଫିରିଙ୍ଗିଙ୍କ ସୈନ୍ୟ            ଆକ୍ରମଣ ଆଗେ
ବକ୍ସି-ପଦାତିକ ଯାଆନ୍ତି ଡ଼ରି
ନାଗେ ତ ବକସି,            ପଳାୟନ କଲେ,
ଅଯଥା ସଂତ୍ରସ୍ତ କେଶରୀପରି ।

ଖୋରଧା ଯୁଦ୍ଧର            ରୁଦ୍ର ବିପର୍ଯ୍ୟୟେ
କୃତ୍ତିବାସଙ୍କର ଆଶା ସଉଧ ।
ହେଲା ଭୂମିସାତ            ଚୈତ୍ର ଭ୍ରମ ବତ
ପାହାଡ଼ ଶିରେ କି ପଡ଼େ ବଉଦ ।

କୁଟନୀ ଇଂରେଜ            ସରକାରଙ୍କର
ଖଟରେ ପ୍ରଚୁରିତ ହେଲା ଘୋଷଣା
ବିପ୍ଳବୀ ପାଇକ            ନେତାଙ୍କ ବିରୁଦ୍ଧେ
ଫାଶୀ, ଦ୍ବୀପାନ୍ତର, ଦଣ୍ଡ ଯନ୍ତ୍ରଣା ।

ବହୁ ଦେଶ ପ୍ରେମୀ,            ପାଇକ ତରୁଣ
ଶତ ଅତ୍ୟାଚାର କଲେ ବରଣ
ଯୁଗେ ଯୁଗେ ପରା            ଦେଶସେବୀଙ୍କର
ପୁରସ୍କାର କାରା ଅବା ମରଣ ।

ସରକାର ପୁଣି            କରିଲେ ଘୋଷଣା
ସାଠେଶାକ୍ଷୀଙ୍କୁ ଯେ ଦେବ ଧରାଇ
ପୁରସ୍କାର ତାର,            ସଧା ଅଧିକାର
ନିଷ୍କର ଜାଗିରି, କ୍ଷମତା ଥାଇ ।

କିନ୍ତୁ ପାଠଶାଣୀ ଏ ଘୋଷଣା ଜାଣି
ଅତି ସାବଧାନେ ଆତ୍ମ ଗୋପନେ
ଲୁଚି ଲୁଚି କରୁ ଥାଆନ୍ତି ପ୍ରଚାର
ଗଣବିପ୍ଳବର ପରିକଳ୍ପନେ ।

ପୁରସ୍କାର ଲୋଭେ ପଦବୀ ଲାଳସୀ
ପାଠଶାଣୀଙ୍କର ନେଲେ ସନ୍ଧାନ ।
ପୁରସ୍କାର ପତ୍ର, କରେ ଆତ୍ମହତ୍ୟା
ଦେଶଦ୍ରୋହୀ ଗଣେ ଯୁଗ ପ୍ରମାଣ ।

କୃତ୍ତିବାସଙ୍କର ନସ୍ତୁର ଶ୍ୱଶୁର
ଚଣ୍ଡୀ ବାସୁଦେବ ନରେନ୍ଦ୍ର ସିଂହ
ପ୍ରତିହିଂସା ପୁଣି ପୁରସ୍କାର ଲୋଭେ
ସେ ଘୋଷଣା ଶୁଣି କଲେ ଆଗ୍ରହ ।

ଏକଦିଗେ ଦେଶ— ପ୍ରାଣ ପାଠଶାଣୀ
ଉଦାର ପୁରୁଷ ବିପ୍ଳବୀ ବର
ଆନଦିଗେ ପୁଣି କୁଟିଳ ପ୍ରକୃତି
ଅତି ନୀଚମନା ସେ ସ୍ୱାର୍ଥପର ।

ବାସୁଦେବଙ୍କର ଅବଶ୍ୟମ୍ଭାବୀ ଭାବେ
ପୂର୍ବ ଲୋକେ ତାଙ୍କ ପ୍ରତି ବିମୁଖ,
ଭୀଷଣ ଅବସ୍ଥା ଅବାଧତା ପୁଣି
ତାଙ୍କ ଆଚରଣେ ଦେଶର ଦୁଃଖ ।

ବାସୁଦେବଙ୍କର ଅହେତୁ-ଆଶଙ୍କା,
ଜାମାତା ତାଙ୍କର ଏସବୁ ମୂଳ
ତାଙ୍କୁ ଯେବେ ଏବେ ଧରାଇ ପାରିବେ,
ପ୍ରତିଶୋଧ-ଆଶା ହେବ ସଫଳ

ପାଟେଶ୍ୱରୀଙ୍କର ପରାଣ ପ୍ରେୟସୀ
ବାପଘରେ ଥାନ୍ତି ବନ୍ଦୀ ସମୟେ,
ତରୁଣ ବୟସ୍କା— ବଧୂ କାନ୍ଦି ଦୁଃଖେ
ଜୀବନ କାଟନ୍ତି ପିତା ଆଶ୍ରୟେ ।

ବିପ୍ଳବ ମୁଖର, ସ୍ୱଦେଶ ବତ୍ସଳ
ବିଦ୍ରୋହୀ—ପତ୍ନୀର ଏହିତ ଦଶା ।
ଯୁଗେ ଯୁଗେ ସିନା ବିରହ ବେଦନା
ବିରହମାଣାର ଆଶା ଭରସା ।

ଆତ୍ମ ସଂଗୋପନ କାରୀ ପାଟେଶ୍ୱରୀ
ବନପଥଚାରୀ ଅରଣ୍ୟ ଯାତ୍ରୀ,
ତରୁ ଫଳ ଖାଇ ତରୁ ତଳେ ଶୋଇ
ବିତାଇ ଦିଅନ୍ତି ଦୁର୍ଯ୍ୟୋଗ ରାତ୍ରି ।

ବଙ୍କାଡ଼ ଗଡ଼ର ଅଧିଷ୍ଠାତ୍ରୀ ଦେବୀ
ସୁକ୍ଷ୍ମ ସ୍ଥୁଳକଳା ଲାବଣ୍ୟମୟୀ,
ଦେବୀ ଉଗ୍ରତାରା ମୂର୍ତ୍ତି ମନୋହରା
ଉପାସିତ ଏବେ ସ୍ଥାପନା ପାଇ ।(୧)

ରାଜବଂଶ ଦ୍ୱାରା ପୂଜା ପାଉଥିଲେ
ବଙ୍କାଡ଼ ଗଡ଼ର ହ୍ରଦ ଆସନେ,
ବଙ୍କାଡ଼ ଗଡ଼ର ଅବସାନ ପରେ
ସଂସ୍ଥାପିତ ହୋଇଛନ୍ତି ଯତନେ;

ବାଣପୁର-ଦେଶ (୨)ଟିକରେଇ ଦେବୀ
ଠାକୁରାଣୀଙ୍କର ଶିଳା ମନ୍ଦିରେ,
ତହିଁ ଉଗ୍ରତାରା ଦରଶନ ଆଶେ
ପାଟଣାଣୀ ଯାନ୍ତି ପ୍ରତ୍ୟହ ଥରେ ।

ଜାଣିପାରି ଏହା ବାସୁଦେବ ପର
ଏକ ସାହାନ୍ତାରେ ସୁଯୋଗ ନେଇ,
ମାୟା ସ୍ନେହଜାଲେ ଆପଣା କପଟେ
ପାଟଣାଣୀଙ୍କୁ ସେ ଦେଲେ ଧରାଇ ।

ପତ୍ନୀ ନାମ ଶୁଣି- ପାଟଣାଣୀ-ମଣି
ସମବେଦନାରେ ତରଳି ଯାଇ,
ଶ୍ୱଶୁରଙ୍କ ସଙ୍ଗେ ଗମନ କରନ୍ତେ
ଶ୍ୱଶୁରଙ୍କ ପୁରେ ବିଶ୍ୱାସ ପାଇ ।

---

(୧) ବଙ୍କାଡର ଅଧିଷ୍ଠାତ୍ରୀ ଦେବୀ ଉଗ୍ରତାରା ମୂର୍ତ୍ତି, ସେ ହରଚନ୍ଦନ ରାଜବଂଶଦ୍ୱାରା ପୂଜାପାଉଥିଲେ । ପରେ ବନ୍ଦୂଥଡକୁ ସ୍ଥାନାନ୍ତରିତ ହୋଇ-ଥିଲେ । ତାଙ୍କୁ ପାଟଣାଣୀ ପ୍ରତ୍ୟହ ଦର୍ଶନ କରୁଥିଲେ ।

(୨) ବାଣପୁର ବନ୍ଦୂଥଡ଼ଠାରେ ଏ ଦେବୀଙ୍କ ମନ୍ଦିର ଅବସ୍ଥିତ ।

ନାରୀଭାବ ଯହିଁ ଯୁଗେ ଯୁଗେ ଛହିଁ
ପୁରୁଷ ପାଇଁକ ଶକତ ଜାଲ,
ନାରୀ ଦୁଃଖେ କାହିଁ ପୁରୁଷ ବ୍ୟଥିତ
ଯୁଗେ ଯୁଗେ ଦିଏ ଲୋତକ ଧାର ।

ନାରୀ ଆଖିମାୟା ଅପରୂପ ଛାୟା
ବିଚଳିତ କରେ ବୀର ପୁରୁଷେ,
ପ୍ରାଣପ୍ରିୟା ପତ୍ନୀ ଅଭିମାନ ଏବେ
ପାଠଶାଣୀ ହୃଦେ ଫୁଟିଛି ବଶେ ।

ଶ୍ୱଶୁରଙ୍କ ଗୃହେ ପଶୋହିଁ ସମୟେ
ପାଠଶାଣୀ ବୀର ହୁଅନ୍ତି ଧରା,
ପ୍ରହରୀ ଫଉଜ କରନ୍ତି ଘେରାଉ
ଏବେ ପାଠଶାଣୀ ବନ୍ଦୀଟି ପରା ।

ପାଠଶାଣୀ କରୁ ପାଠ ଖଣ୍ଡା ପଟି
କାଢ଼ି ନଆଗଲା, ହେଲେ ସେ ବନ୍ଦୀ,
ଛୁଟିନାହିଁ ପାରି ପାଠଶାଣୀ ବଧୂ
ଆକୁଳ ହୁଅନ୍ତି ନିରତ କାନ୍ଦି ।

ସଙ୍ଗେ ସଙ୍ଗେ ପୁଣି ଲୋଚନା ସର୍ଦ୍ଦାର
ବନ୍ଦୀ ହୁଏ ଗୋରା ସିପାହି ମେଳେ,
ଆହା ବରୁଖେଇ ଗିରି ଦୁର୍ଗ ତଳେ
କି ଭୀମ ଜଗଲ ତିମିର ଖେଳେ— ।

ହାୟ ବାସୁଦେବ ତୁମରି ଗରବ
ହାୟ ତୁମ ପ୍ରତିଶୋଧ ଆଘାତ,
ଏକା ମାଟି ଜାତ ତରୁଲତା ଭିନ୍ନ
ବାମ ହାତୁ ଭିନ୍ନ ଦକ୍ଷିଣ ହାତ ।

ରାଜଦ୍ରୋହ ହତ୍ୟା ବିପ୍ଳବର ବାତ୍ୟା
ଅଭିଯାନ ସଙ୍ଗେ ଅରାଜକତା,
ସୃଷ୍ଟି କରିଥିବା ଅପରାଧ ଯୋଗୁ,
ପାଠଶାଣୀଙ୍କର ଦୋଷର ସଜା ।

କ୍ରୂର କଳାପାଣି ହୁଏ ଶେଷଦଣ୍ଡ
ଦେଶ ପ୍ରେମୀଙ୍କର ଶାସ୍ତି ମଧୁର,
ପାଠଶାଣୀ ହୋଇ (କ)ପ୍ରହରୀ ବେଷ୍ଟିତ
ଗଲେ ଆଣ୍ଡାମାନ ଦ୍ୱୀପେ ସୁଦୂର ।



---

(କ) ଅଣ୍ଡାମାନ ଦ୍ୱୀପ ଭାରତ ମହାସାଗରରେ ଅବସ୍ଥିତ । ଇଂରେଜ ରାଜତ୍ୱକାଳରେ ଭାରତରୁ ଦ୍ୱୀପାନ୍ତର ଦଣ୍ଡରେ ଦଣ୍ଡିତ ବନ୍ଦୀମାନଙ୍କୁ ଏଠାରେ ରଖାଯାଉଥିଲା ।

# ସପ୍ତମ ସର୍ଗ

( ରାଗ—ଚିନ୍ତା ଦେଶାକ୍ଷ )

ଆହା ଧନୁର୍ଦ୍ଧର ପାଠେଣାଣୀ,
ସାର ପାଇକ ମସ୍ତକମଣି,
ଯାହାର ଧନୁ ଠଙ୍କାର ଭୀତି ଆଣେ
ତାରେ ବନ୍ଦୀ କେ କରିଲା ପୁଣି ହେ, ବିଦ୍ରୋହୀ ।

ମୁଖେ ମୃତ୍ୟୁଞ୍ଜୟ ପାଠେଣାଣୀ,
ସର୍ବ ସାହସ ଶକତି ଖଣି,
ଆଜି ଯାଆନ୍ତି ସୁଦୂରେ ବନ୍ଦୀ ହୋଇ
ଦେଶେ କା' ମୁଖେ ଫୁଟିବ ବାଣୀ ହେ, ବିଦ୍ରୋହୀ ।

ହାୟ ସ୍ୱାର୍ଥପର ବାସୁଦେବ,
ହାୟ ତୁମ ହୀନ ମନୋଭାବ,
ନିଜ ଜାମାତା ହାତରେ ଦେଲ ଧରାଇ
କି ମନୋବୃତ୍ତି, କ୍ରୂର ସ୍ୱଭାବ ହେ, ବିଦ୍ରୋହୀ ।

ଆଜି ଗ୍ରାମେ ଗ୍ରାମେ ପଡ଼େ ଛୁରି,
ଏତେ ଦେଶଦ୍ରୋହୀ କାର୍ଯ୍ୟ କରି,
ଚିର ସୁପ୍ତେ ଦ୍ୟ ମାଠେଶଣୀ ସୁପ୍ତ ଭେ
ଦେଖ ଧରୁଛ ନିଲ'ଜ ପରି ସେ, ବିଦ୍ରୋହୀ !

ସୁବିସ୍ତୀର୍ଣ୍ଣ ପଥ ଦୂର୍ବାଦଳ,
ଆଶ୍ରା କରି ଯେଉଁ ତରୁ ତଳ,
ନିଦାଘେ ଅହା, ତାପ କ୍ଲାନ୍ତ ହେଲେ
ସେ ତରୁ କିଏ କାଟେ ସମୂଳେ ସେ, ବିଦ୍ରୋହୀ !

ବନ୍ଧା ହୋଇ ବୀର ପାଠଶାଳୀ
ଯାଉଛନ୍ତି କ୍ଷେତ୍ରେ କଳାପାଣି,
କି ଧୈର୍ଯ୍ୟଶାଳୀ ଭୁଜଙ୍ଗାପ୍ରୁ ପୁରୁଷ
ଦୁର୍ଭାଗ୍ୟବଶ, ଭୂଧର ଫଣୀ ହେ, ବିଦ୍ରୋହୀ।

ନାରକିଙ୍କ କାହିଁ ଶହ ଶହ,
ଶୈଳ ଚିନ୍ତଃସ୍ପୃଶ କି ଦୁର୍ବାହ
ସ୍ରୋତ ତାଙ୍କର, ଅକୁଳ ଅଶ୍ରୁପାତ,
ବକ୍ଷେ କଳଙ୍କ ବେଦନା ଦାହ ହେ, ବିଦ୍ରୋହୀ।

ଚତୁର୍ଦ୍ଦିଗେ ଖାଲି ହାହାକାର,
ଯେତେକ୍ଷ ବିକ୍ଷୋଭିତ ପାରିବାର,
ବିହଙ୍ଗମର ହୋଇଛି ପକ୍ଷଚ୍ଛେଦ
ମୁମୂର୍ଷୁଜାତି, ଜଟାୟୁସ୍ୱର ହେ, ବିଦ୍ରୋହୀ।

ବନ୍ଧୁକ୍ଷେଇ ବନ ନିର୍ଝରିଣୀ,
ଚିର ପ୍ରକୃତିର ପୂଜାରିଣୀ,
ନିସ୍ପନ୍ଦ ତାର ଚଞ୍ଚଳ ଗତି ଆଜି
ଉଠେଛ ବିଳପେ କାନନରାଣୀ, ହେ ବିଦ୍ରୋହୀ।

ଯାଅ ଯାଅ ବୀର ପାଠଶାଣୀ,
କହୁଥିଲା କିବା ଶୂନ୍ୟବାଣୀ,
ସକଳ ଜନେ ତୁମେ ଦୁର୍ଦ୍ଧର୍ଷ ବୀର
ଦେଶ ବତ୍ସଳ, ସେବକ ମଣି ହେ ବିଦ୍ରୋହୀ।



# ଅଷ୍ଟମ ସର୍ଗ

(ରାଗ-ରାମକେରୀ)

ବିଦାୟ ଦିଅ ଗୋ ଜନନୀ, ଦିଅ ଶୁଭ ମେଲାଣି
ଅଧମ ତୁମରି ସନ୍ତାନେ, ଡାକେ ସେ କଳାପାଣି ।
ତୁମରି ଅଧମ ଅଯୋଗ୍ୟ ପୁତ୍ର ଚିର ବିନୀତ
ତୁମ ପଦେ ମାଥା, ଜଣାଏ ଖୋଲି ସୈନିକ ଚିତ୍ତ ।

ବହୁଦିନ ଧରି ଯୁଝିଲି ଦେଶ-ବଇରୀ ସାଥେ
କେତେଖଣ୍ଡା, କେତେବନ୍ଧୁକ ଗଲି ନଷ୍ଟ ହାତେ
ହେତେ ଢାଲ, ବର୍ଚ୍ଛା, ଶାୟକ, ଅସ୍ତ୍ର ଶସ୍ତ୍ର, ବିବିଧ
ଆଜି ଯେବେ କରେ ସ୍ମରଣ ହୁଏ ହୃଦୟ ବିଦ୍ଧ ।

ନାଚି ନଚୁଇଲି ମୁଲ୍ଲକେ ମୋର ଘାତକ ପଲ୍ଲୀ
ବସନ୍ତ ପବନ ନଚୁଏ ସେଠେଲ୍ଲ ପାଦପ ବଲ୍ଲୀ ।
ଯୁଦ୍ଧ ଯୁଦ୍ଧଡ଼ାକ ଶବଦ ଆଜି ବାଜେ ଶ୍ରବଣେ,
ଛୁଟି ଦିଶିଯାଏ ସତେ ମୁଁ ଟିଆ ହୋଇଛି ରଙ୍ଗେ ।

ବିଦାୟ ଉତ୍କଳ ଜନନୀ, ଆଜି ଶେଷ ବିଦାୟ
ବନ୍ଦୀ ସୈନିକର ଅଛି କି ଆଉ ମୁକ୍ତି ଉପାୟ ?
ଶାସ୍ତି କଳାପାଣି ମୋପାଇଁ ନିର୍ବାସନ କଠୋର
ମୋର ଅଙ୍ଗେ ଅଙ୍ଗେ ଶୃଙ୍ଖଳ ଶକ୍ତ ବନ୍ଧନ ଡୋର ।

କଳାପାଣି ପଥେ ଯାତ୍ରୀ ମୁଁ ଶେଷ ପଥର ଯାତ୍ରୀ
ମୋ, ଜୀବନ-ସାନ୍ଧ୍ୟ ଆକାଶେ ମାଡ଼ି ଆସୁଛି ରାତ୍ରି,
ହାୟ ହାୟ ନିଷ୍ଠୁର ସମର ଇତିହାସ ନିଷ୍ଠୁର
ମଣିଷ ଜୀବନେ କେସନେ ଏହା କରୁଛି କ୍ରୁର ।

ହାୟ ହାୟ ଏତେ ଦୁର୍ଭାଗ୍ୟ ହାୟ ଏତେ ବିଷାଦ
ଜାତୀୟ ଜୀବନେ ଅବୋଧ ସମସ୍ତର ପ୍ରମାଦ ।
ପରକ୍ଷଣେ ଚିନ୍ତା ଦୋଳନେ ପାଠଶାଳୀ ଭ୍ରାନ୍ତ
ସ୍ୱଜାତିର ଅବା କେବେ ସେ କରିଛନ୍ତି ଅହିତ !

ଜାତି, ଦେଶ, ମାତୃଭୂମିର ସ୍ୱାର୍ଥେ ଦେଇ ଆହୁତି
ନିଜ ସ୍ୱାର୍ଥ, ନୀଚ ସାଧନ, ସ୍ୱାର୍ଥପରର ବୃତ୍ତି—
ସେ କେବେ କି ଖେଳି ଅଛନ୍ତି ଅବିଶ୍ୱସ୍ତ ସମାନ,
ହୀନ ଆଚରଣେ ଆଘାତ କରି ମାତୃସମ୍ମାନ ।

ଥରି ଥରି ଯାଏ ପଲକେ ତାଙ୍କ ବିଶାଳ କାୟା
ଅଗ୍ରେ ପଡ଼ି ଭବିଷ୍ୟତର ଭୀମ କରାଳ ଛାୟା ।
ସଙ୍ଗେ ସଙ୍ଗେ ବନ୍ଦି ନେଉଅଛି ସବଦାର ଚଲତନା
ଯୁଗଳ କେଶରୀ କେସନ ପାଉଛନ୍ତି ତାଡ଼ନା ।

ଫିରିଙ୍ଗି ପ୍ରହରୀ ନଅନ୍ତି ବାଟେ ବାଟେ ଚଲାଇ
ପାଠଶାଣୀ ଦ୍ୱାରେ ସୁଦୂରରେ ନେବେ ପରା ଘେନାଇ
ସହିବ କି କଏ ଏ' ଦୁଃଖ ଅପମାନ ଭୀଷଣ,
ଦ୍ରବ ନିବ ବିନା ଅଶନ, ଗିରିତଳ ପାଷାଣ ।

କେହି ବୁଝେ ନାହିଁ ନୀରବ ବୀର-ପରାଣ-ବାଣୀ
ଆଘାତ ଉପରେ ଆଘାତ ପରା ଦିଅନ୍ତି ହାଣି ।
ସତତ ପ୍ରହରୀ ବେଷ୍ଟିତ ହୋଇ କି ପାଠଶାଣୀ
ଗୁଲଚନ୍ଦ୍ର ନିର୍ବାସନରେ କାହିଁ ସେ କଲାମାଣି ।

ବେଳେ ବେଳେ ଦୀପ୍ତ ନୟନୁ ପଡ଼େ ଝରି ଲୋତକ
ହୀରା କୋଷ୍ଠ କିବା ମୁକ୍ତା ବିନ୍ଦୁ ଦିଏ ଚମକ ।
ସ୍ୱଦେଶ ଉଦ୍ଦେଶ୍ୟେ କାନ୍ଦନ୍ତି ପରା ସେ ବନ୍ଦୀ ବୀର
ବିଷାଦିତ ଜନ୍ମଭୂମିର ପଦେ ଲଗାଇ ଶିର ।

ବିପିନ, ପାଦପ, ବ୍ରତତୀ କାନ୍ଦୁଛନ୍ତି ନପସନ
ପର୍ବତ ଶିଖର କନ୍ଦିକା ଛୁଟେ ଅଶ୍ରୁ ବର୍ଷଣ ।
ଡାଳେ ଡାଳେ ବସି ବିହଗଦଳ କରେ ରୋଦନ
ପାଠଶାଣୀ କାନ୍ଦୁ ନୁହନ୍ତି ତିଳେ ହେଲେ ବିମନ ।

ପଲ୍ଲୀ ଉପକଣ୍ଠ-ବିହାରୀ ଧେନୁପଲ କି ସଙ୍ଗେ
ହମ୍ବା ରଡ଼ି ଗୁଡ଼ି କାନ୍ଦନ୍ତି ବିଷାଦରେ ନିରଙ୍ଗେ ।
ଶୀର୍ଣ୍ଣ ଶିଳବଲ୍ଲୀ ନ ନାଚେ ଆଜି ଅଙ୍ଗ ଦୋଳନେ
ଗାଭୀ ଦିଏନାହିଁ ସୁଦୃଷ୍ଟି ତାର ବତ୍ସା ପାଳନେ ।

ମାତାସ୍ତନେ ମୃଗଶିଶୁର ଆଜି ମୁଖ ନିଶ୍ଚଳ
ଚିର ଗତିଶୀଳ ସମୀର ସୁଦ୍ଧା ଆଜି ଅଚଳ ।
ଓଡ଼ିଆ ପାଳକ ଜାତିର ମଥାମଣି ଯେ ବୀର
ତାର ବିପର୍ଯ୍ୟସ୍ତ ଅବସ୍ଥା ଦେଖି ସର୍ବେ ଅସ୍ଥିର ।

ବୁଡ଼ି ଯାଉଛନ୍ତି ତପନ ନୀଳ ସାଗରୀ କୂଳେ
ପକ୍ଷି ମେଳ ଏବେ ବସୁଛନ୍ତି ହ୍ରଦ ଚିଲିକା କୂଳେ ।
ଏବେ ବିଦ୍ୟାଧରୀ ଆଗମ ଦୂରଦେଶୀ ବୋଇତ
ଚିଲିକା କଲ୍ଲୋଳେ ନାବିକ ବେଗେ ଯାଏ ବାହିକି ତ ।

ବୁଡ଼ି ବୁଡ଼ି ଯାଏ ତପନ ଶୃଙ୍ଗ ଉହାଡ଼େ ହସି
ମର୍କତ ମୁକୁଟେ କାଞ୍ଚନ ଟୀକା ପଡ଼େ କି ଖସି ।
ପାଠଶାଣୀ ଏବେ ଯାଆନ୍ତି ହୋଇ ଅଠକବନ୍ଦୀ
ଫିରିଙ୍ଗି ପ୍ରହରୀ ନିଅନ୍ତି ତାଙ୍କୁ ଶୃଙ୍ଖଳେ ଛନ୍ଦି ।

ପାଠଶାଣୀ ଆହା ଚାହାନ୍ତି ସେହି ପାହାଡ଼ ମାଳେ
ଚିର ପରିଚିତ ବିପିନ କୁଞ୍ଜ ବୃକ୍ଷ ତମାଳେ ।
ଦୁଃଖାବେଗେ କହି ପକାନ୍ତି "ମୁହିଁ ଯାଉଛି ଦୂରେ
ମୂକସାକ୍ଷୀ ରୂପେ ସେ'ଲରୀ ରହିଥାଅ ଏ ପୂରେ ।

ନେଉଛି ବଦାମ୍ବୁ ଭଲ୍ଲେରୀ, ଗୁଳ୍ମ କଣ୍ଟିଆମାଳ
ରହିଥାଅ—ଯେତେ ଚମ୍ପକ ଚୂତ ତରୁ ତମାଳ,
ବଣ ଶଲ ବୁଦା ବଲ୍ଲରୀ ନାଗେଶ୍ବର ନିକୁଞ୍ଜ
ପହିଲି ଫଗୁଣେ ହସଇ ଯେତେ କେତକୀ କୁଞ୍ଜ,

ରହିଥାଅ ନିଜ ଆସ୍ଥାନେ ମୋର ଦୃଷ୍ଟି ବାହାରେ
ମୁଁ ପଶୁ ଯାଉଛି, ମୋ ଶାନ୍ତି କଳପାଣି ବାହାରେ !
ଚପଳ ଚିଲିକା ମଣ୍ଡନକାରୀ ନୀଳା କଲ୍ଲୋଳ—
ଉତ୍‌ଥିତ ନିକ୍ୱଣ, ଆବର ରାଜହଂସୀର ରୋଳ,

ଶୁଣିଛି—କାହିଁବା ଦେଖିଛି ତାର ଦେହେ ମୁଁ ଛବି
ଶାରଦ ପ୍ରଦୋଷେ ହସଇ ଯେବେ ଆନତ ରବି ?
ବଣିକ ବନିତା ତ କୂଳେ କରେ ବାଟି ଗଣନ
କେବେ ଫେରିବ ତ' ବନ୍ଧୁର ତରୀ ହୋଇ ଶୋଭନ ।

କେବେ ବା ସାଧବ ଲଳନା ଏହି ଚିଲିକା ପାଶେ
ଆସିଥିବ ଶୁଭ ମନାସି ତାର ପ୍ରିୟ ସକାଶେ ।
ଶୁଭ୍ର ସିକତିଳ ପ୍ରାନ୍ତରେ ଦୁଃଖେ ବଦାମ୍ବୁ ସାରି
ଫେରୁଁ ତା ବାହୁଡ଼ା ଚରଣ ହୋଇଥିବ ତ ଭାରି ।

ଏହି ହ୍ରଦ କୂଳେ ଅଦୂରେ ଉଠିଥିବ ତ' ହୁଡ଼
ଦୂରେ ପ୍ରତିନାଦେ ଉଛୁଳିଥିବ ରାଜାଙ୍କ ଗଡ ।
କେତେ ବୀର ଗୁଣୀ ପାଇକ ଖେଳିଥିବେ ତ ଏଥି
ଅନନ୍ତ ସିକତା ସମାନ ହୃଦବ୍ୟଥା ମନ୍ଥି ।

ଆହା ମୁଁ ଯେ ଆଜି ଯାଉଛି କଳାପାଣି ଆନଦେଶେ
ପଥପାର୍ଶ୍ୱେ ଭିକ୍ଷୁ ସମାନ ଅତ୍ୟାଗ୍ଲୁରିତ ବେଶେ ।
ଫିରିଙ୍ଗି କରନ୍ତି ନିର୍ଦ୍ଦୟେ ଦେଶପ୍ରେମୀ ବନ୍ଧୁର •
ବୀରତ୍ୱ ଜୀବନେ ପଡ଼ଇ ଯେତେ ଏହି ବେଭାର ।

ଅତୀତ ସମର କାହାଣୀ ପଡ଼େ ତଥାପି ମନେ
ସ୍ମୃତି ବଳେ ବଳେ ବସାଏ ନେଇ ରାଜ-ଆସନେ ।
ଯାଉଛି ବନ୍ଦୀ ମୁଁ ବନ୍ଧନେ ଲୌହ ଶୃଙ୍ଖଳ ବଳେ
ତଥାପି ଦୃଷ୍ଟି ମୋ ଖେଳୁଛି ଦିଗ ପ୍ରାଚୀର ତଳେ ।

ମନେ ମନେ ହୁଏ ଭ୍ରାନ୍ତ ପ୍ରଶ୍ନ ପଗୁରେ ମତେ
ସୌଦାମିନୀ ହାର ସାଜେ କି ଘନ ବାହୁନେ ଆନେ ?
ଅନ୍ତର ବେଳାବର ବିକଳେ କୋହ ତରଙ୍ଗ ଘାତ
ପ୍ରତିଘାତେ କ୍ଷଣେ ହୁଅଇ ଦୃଢ଼ ଧୈର୍ଯ୍ୟ ପାତ ।

ଆହା ପୁଣି ମୁହିଁ ଯାଉଛି ଛାଡ଼ି ମୋର ଉତ୍କଳ
ତରୁଣ ବୟସ ସପନମୟ କନକାଞ୍ଚଳ ।
ରହ ରହ ଜଗୁଆଳରେ ରହ ପ୍ରହରୀ ଦଳ
ଏ ମାଟିର ଶେଷ ପରଶେ ପ୍ରାଣ ହେଉ ଶୀତଳ ।

ଶେଷଥର ଲାଗି ଜୀବନେ ଚାଲୁ ଚାଲୁ ଏ ପଥେ
ପ୍ରତିପଦେ ଜଣାଯାଉଛି ସ୍ୱର୍ଗ ପରି ଏ ସତେ ।
ଯେତେ ହୁଏ ଅଗ୍ରସର ମୁଁ ଯେତେ ଚମକ ଯାଏ
ଜୀବନର କିଛି ମୂଲ୍ୟ କି ଏଥି ହଜାଇଯାଏ !

ରାତି ତ ହେଲାଣି ବହୁତ ଚତୁର୍ଦ୍ଦିଗ ନୀରବ
ଜୋଛନା ରଚିଛି ଜଗତେ ଯାଦୁକରୀ ଉତ୍ସବ ।
ବାହାରେ କୋମଳ ଦୂର୍ବାର ନୀଳ ଗାଲିଚାପରେ
ତାରକା ବଦନୁ ତରଳ ସ୍ନିଗ୍ଧ ଜୋଛନା ଝରେ ।

ଗୋଲାପ ସୁମନ ସୁଗନ୍ଧ ମିଶେ ଜୋଛନା ପୂରେ
ପଡ଼ିଲା ଫୁଲର ଅଧରେ କେବେ ବତାଶ ଘୂରେ ।
ବ୍ରୀଡ଼ା ତେଜି ବ୍ରୀଡ଼ାବନତ ହେମ ପୁଷ୍ପ ବନିତା
ଚନ୍ଦ୍ରିକା ଚୁମ୍ବନ ଆଶାରେ ଊର୍ଦ୍ଧ୍ୱମୁଖେ ଦୋଳିତା ।

ପିଞ୍ଜରା ଆବଦ୍ଧ ବିହଙ୍ଗ ସମ ବିଷାଦ ମନେ
ପାଠଶାଳୀ କରୁ ନିଶ୍ଚଳ ସେହି ବନ୍ଦୀ ସଦନେ ।
ଭାବୁଛନ୍ତି ସେହୁ ବହୁତ ବାଧାହୀନ ମୁହୂର୍ତ୍ତେ,
କଳ୍ପନା ସଙ୍ଗେ ବା ଉଡ଼ାଏ ଶତ ସ୍ମୃତି ଜୀମୂତେ ।
ସ୍ମୃତିର ମୟୂଖ ଉଜ୍ଜ୍ୱଳି ଅବା ସ୍ମୃତି ଦର୍ପଣେ
ଫିରିଙ୍ଗି ଜୀବନ ବେଦନା ନାଚି ଉଠେ ସଘନେ ।
କଳାପାଣି ନେବା ଉଦ୍ଦେଶ୍ୟେ ଏହି ପ୍ରହରୀଦଳ
ମୋତେ ଆଣି ରଖିଅଛନ୍ତି ଏହି କକ୍ଷେ କରାଳ ।

ବନ୍ଦୀ ସରଦାର(୧) ରହିଛି ମୋର ପାର୍ଶ୍ୱ କକ୍ଷେ
ଆମେ ଦୁଇଟିକ ଦୁର୍ଭଗା ଏତେ ଧରଣୀ ବକ୍ଷେ !
ଯୁଦ୍ଧ ଯୁଦ୍ଧ ବୋଲି ଆହ୍ୱାନେ ଯା' ଜୀବନ ମୁଖର
ଯାର ବାଣ ସୂର୍ଯ୍ୟ ପ୍ରଖର ତାପଁ ପ୍ରଖରତର ।

୧ । ଏଠାରେ ଲୋକନା ସର୍ଦ୍ଦାର, ଯେ କି ପାଠଶାଳୀଙ୍କର ସର୍ବଦା ଅନୁଗତ, ତାଙ୍କୁ ଲକ୍ଷ୍ୟ କରାହୋଇଛି ।

କେଉଁ ଦୋଷୁ ଆଜି ହୋଇଲା ତାର ଏହି ଦୁର୍ଗତି
ଭାବିଲେ ହୃଦୟ ବେଦନା ଦାବେ ହୁଏ କରଗତି ।
ମୋର ଯେଉଁ ଭବ୍ୟ ସପନ ଯେଉଁ ଚୂକ୍ତ ଯୋଜନା
ସେ ସବୁ ହୋଇଲା କି ଆଜି ! କାହିଁ ତାର ସାଧନା !

ଚିର ଜଣାଶୁଣା ସ୍ୱାଧୀନ ବୀରପ୍ରସୁ ଯେ ଜାତି,
ବଜ୍ର ଶକ୍ତ ଯାର ହୃଦୟ ସଦା ସମରେ ମାତି ।
ତା ଦେଶେ ଫିରିଙ୍ଗି ପ୍ରବେଶ ଅସମ୍ଭବ ସମ୍ଭବ
ମାନେ ନାହିଁ ମନ ମୋହର ଯେତେ ଧରିଲେ ଦମ୍ଭ ।

କାହିଁଗଲା ପଣ କଠୋର ଶୁଭ ସଂକଲ୍ପପୂତ
ପଣ୍ଡ ହେଲା ଦୃପ୍ତ ବିଦ୍ରୋହ ସେହି ପଣ ସମ୍ଭୂତ ?
ଥିଲି ଫିରିଙ୍ଗିର ଦମନେ ମୂଣ୍ଡ ପାଣି ଛୁଡ଼ାଇ
ସେ ଫିରିଙ୍ଗି ଆଜି ନେଉଛି ମୋତେ ଦେଶୁ କଢ଼ାଇ ।

ସୂଚୀ ଅଗ୍ର ସ୍ଥାନ ପ୍ରଦାନେ ଥିଲି ମୁହିଁ ବିରୋଧୀ
ଏ ଦେଶେ ପ୍ରବେଶ ମୋହର ଦିଏ ଫିରିଙ୍ଗି ରୋଧି ।
ହାୟ ! ହାୟ ! ଏକି ପତନ ! ବିଡମ୍ବନା, ରହସ୍ୟ
ଆଜି ବନ୍ଦୀ ବୀର କାଳର ପାଠଶାଳୀ ଅବଶ୍ୟ !

ସୁଖେ ମାରୁଛନ୍ତ ଘୁଙ୍ଗୁଡ଼ି କଡ଼ା ପ୍ରହରୀ ବେନି
କଠୋର ଜୀବନ ଶୃଙ୍ଖଳ କ୍ଳାନ୍ତ ବେଦନା ଘେନି ।
ଗଗନେ ଶୋଭିତ ସୁଧାଂଶୁ ଅତି ପୁଲକ ଭରେ,
ସୁପ୍ତ ବିହଙ୍ଗମ ଚମକି ଉଠି କୂଜଇ ଖରେ ।

ଚିଲ୍‌କା କ ଶୁଭ୍ର ସଲିଳ ଷୀଣ ସାଳିଆ ତୀରୁଁ
ସ୍ମୃଷ୍ଟ ପୁଷ୍ପଗନ୍ଧ ଅଥବା କେଉଁ ବଣ ବଲ୍ଲୀରୁ ।
ବହଳ ସମୀରଣ ଏ କାବ୍ୟକକ୍ଷେ ଆସୁଛି ଭାସି
ଅଦେଖା ଅଜଣା କାନନବଲ୍ଲୀ ସ୍ମୃତି ପ୍ରକାଶି ।

ଘଣ୍ଟଶିଳା କବା ଭଲେରୀ ଗୁଳୁଣ୍ଡା ଶିଖରେ
ଯହିଁ ଉତ୍କଳର ଗୌରବ ଲେଖା ସ୍ୱର୍ଣ୍ଣ ଅକ୍ଷରେ
ଯହିଁ ଶୈଳ ଶୃଙ୍ଗେ ପାଷାଣ ସଙ୍ଗେ ଗୁମ୍ଫୀ ଶାସକେ
ଅନ୍ତର ମିଶାଇ ଦିଅନ୍ତି ଶିକ୍ଷା ଅଦ୍ୟାପି ଲୋକେ ।

ରାଷ୍ଟ୍ରଗୋଷ୍ଠୀ ଅନୁଶାସନେ ଦୟା ଧର୍ମ ସଙ୍କେତେ
ଉପଦେଶାବଳୀ ଗମ୍ଭୀର, ଭାବମୟ ଯେ କେତେ ।
ସେ ସର୍ବ ପରଶି ନିଶୀଥେ ନିଶାଚରଙ୍କ ମେଳେ
ରୁଚିର ଚପଳ ଚନ୍ଦ୍ରିକା ଆଜି ଉଲ୍ଲାସେ ଖେଳେ ।

ପ୍ରଚୁର ଶ୍ରୀଫଳ ସମ୍ଭାର ପ୍ରକୃତିର ସମ୍ପଦ
ମୋ ଜାତି ମୋ ଦେଶ ଉତ୍କଳ କ୍ଷେତ୍ର ପରମାନନ୍ଦ ।
ସଞ୍ଚିତ ସଲିଳ ସାଳିଆ କୂଳେ ବେତସ ବନ
ଆଜି ଏ ବୃନ୍ଦିନୀ ନିଶୀଥେ ମଞ୍ଜୁ କୁସୁମାୟନ ।

ଶୀକର ନିକ୍ଷେପ ଉଦକ ସ୍ରୋତ ଜଳ-ପ୍ଲାବିତ
ଉତ୍ପ୍ଲାବନେ ସେହି ପାଦପଙ୍କର ପୁଷ୍ପ ପୂରିତ ।
ଭୁହାଇ ଭୁହାଇ କାହିଁକି କାନ୍ଦୁଛୁରେ ଚକୋର
ତୋ କଣ୍ଠଆହ୍ୱାନ କମ୍ପାଏ ରୁକ୍ଷ ଅନ୍ତର ମୋର ।

ଅଗତ୍ୟା ବନ୍ଦୀ ମୁଁ ଶୁଣଇ ତାହା ଏ କାରାପୁରେ
ସେ ମିନତି ଭରା ସୁସ୍ୱର ମିଶେ ପାହାଡ଼େଁ ଦୂରେ ।
ନାଚୁଆ ବିହଙ୍ଗ ପାଦପନୀଡ଼େ ଏବେ ନିଦ୍ରିତ
ତୁ କିପା ଏତେ ରେ ଅଧୀର, କିଏ ବୁଝିବ ଗୀତ ?

ଦେବତା କି କିଏ ଉତ୍କଳେ ଆଜି ଏଥି ଜଣୀଥେ
ଓହ୍ଲାଇ ଆସିଛି ଦର୍ଶନ କାର ମନାସି ଚିତ୍ତେ ?
ଦେବତା ବିହାର ଭୂମି ଏ, ଦେବକ୍ଷେତ୍ର ଉତ୍କଳ
ସର୍ବ ତୀର୍ଥାଶ୍ରୟ, ମିଳିତ ଏଥି ଧର୍ମ ସକଳ ।

ମାନବ ଆତ୍ମାର ବିକାଶ ସାଥେ ନିଷ୍ଠା ପ୍ରକାଶ
ସଂସ୍କୃତି କଳାର ଅପୂର୍ବ ରମଣୀୟ ଉଚ୍ଛ୍ୱାସ ।
ସମର ସଜ୍ଜାରେ, ଅଦ୍ଭୁତ ସଉଦାଗ ଗଠନେ,
ଏହି ଦେଶେ ମୂର୍ତ୍ତି ମନ୍ଦିର ଦେହେ ବାଣ୍ଡିଷ ଖୋଦନେ

ଦିଗେ ଦିଗେ ଦେଶେ ବିଦେଶେ ଏହି ଜାତି ବିଦିତ
ଦିଗେ ଦିଗେ ଏହି ଦେଶର ବାର୍ତ୍ତା ଘନେ ଘୋଷିତ ।
ପାଇକ ପ୍ରଖ୍ୟାତ ଜାତିର ସେନାପତି ନିନାଦ,
ଶୁଣି-କେତେ ଜାତି ବିଦେଶେ ଗଣିଛନ୍ତି ପ୍ରମାଦ ।

ଏହି କ୍ଷେତ୍ରେ ପରା ସରଗୁଁ ଆସି ଦେବତାଗଣ,
ଏହାରି ରଜତ ସଲିଳା ନଦୀ ଜଳେ ବହନ,
ଅବଗାହି ପୁଣ୍ୟ-ଆମୋଦେ ସ୍ୱର୍ଗେ ଯାଆନ୍ତି ଫେରି
ଚନ୍ଦ୍ରିକା ଚିତ୍ରିତ ନିଶିରେ ଶୁଣି ଚକୋର ଭେରି ।

ଏଦେଶ ସୁରମ୍ୟ ଝାଉବଡ଼ ବନ ନିକୁଞ୍ଜମାଳେ
ଅବତରି ସ୍ୱର୍ଗ ଦେବତା ଜ୍ୟୋତ୍ସ୍ନା-ବିଭୋର କାଳେ
ଅସଂଖ୍ୟ ପ୍ରସ୍ଫୁଟ କୁସୁମ ଭରା ଗନ୍ଧପରାଗ
ଅଳକେ କାହାର ରଞ୍ଜିତ ପୀତ ବିମଳ ରାଗ—

ଏରୂପେ ବିବିଧ ସୁମନ ତୋଳି ଦେବ ବିରହୀ
ଘର ଘର ଯତ୍ନେ ସୁମନେ ସ୍ୱର୍ଗେ ନିଅନ୍ତି ବହି ।
ଉତ୍କଳ କମଳା ବିଳାସବନ୍ତୁ କି ଅବିକଳ
ବହି ନେଉଛନ୍ତି ଭୂଷଣ ରଙ୍କ ଦେବତାଦଳ ।

ଅଗୁରୁ ଚନ୍ଦନ ସୁବାସ ମୋତିମାଣିକ୍ୟହୀରା—
ଦ୍ୟୁତି ବିଭାସିତ ସୁମନ ସୂକ୍ଷ୍ମ ଶ୍ୟାମଳ ଶିରା,
କମ୍ର କିଆ କଳି ଅଶୋକ, ଚୂତ ଚମ୍ପକ ବୀଥି
ଫୁଲପ୍ରିୟ ଦେବଦେବୀଏ ବହି ନିଅନ୍ତି ନିତି ।

ଏ ପବିତ୍ର ଧାମୁଁ ଅମୃତ ପାନ ଆଶେ ଦେବତା
ଚିରଦିନ ବହି ଆସନ୍ତି ନୈସର୍ଗିକ ମମତା ।
ସେହି ଦେଶ ଜାତି ସନ୍ତାନ ମୁହିଁ ଗର୍ବ କରଇ
କିନ୍ତୁ ବାସ୍ତବତା ଆଜିତ ମୋତେ ଘାରି ମାରଇ !

ଶିଶିର ଜଡ଼ିତ କୁସୁମେ ପ୍ରଜାପତି ବସଇ
କଦମ୍ବ କେଶରେ ସମୀର ଧୀରେ ଧୀରେ ରସଇ ।
ନୀଳାଚଳ ଭୂମି ଉତ୍କଳ ଯହିଁ ମୋକ୍ଷ ପ୍ରାପତ
ଚିରନ୍ତନ ପର ଶୋଭଇ ଛହିଁ ସତ୍ୟ-ଶାଶ୍ୱତ ।

ଷଡ଼ ଋତୁ କେଳି ଗନ୍ଧେ ଯହିଁ ଶୁଭ୍ର ପ୍ରଭାତେ
ଦେବଦେବୀ ଖେଳି ଆସନ୍ତି ନିତି ନିତି ପ୍ରଭାତେ
ଝର୍ଝର ନିନାଦ ପ୍ରପାତ ଉର୍ମି ଫେନିଳ ଭଙ୍ଗେ,
ଯନ୍ତ୍ରରକ୍ଷେ ରତ ଅମରେ ଶତ ଅମରୀ ସଙ୍ଗେ ।

ଲୀଳା ଝଞ୍ଜା କରୁ ନର୍ତ୍ତନେ ଶାଳବନ ଗହନେ
ଅଙ୍ଗେ ବୋଲାବୋଲି ହୁଅନ୍ତି ଫଗୁ କି କୁତୂହଳେ !
ସ୍ୱଳୀନ ଉତ୍ସଙ୍ଗ—ପ୍ରସାରି ରତ୍ନାକର କି ଆହା
ଝାଉଁବନ ସଙ୍ଗେ ଡୋଳଇ ଗୂଛୁ ସଙ୍ଗୀତ ସ୍ୱାହା !

ତରଳ—ତାରକା ଶୋଭିତ ଶତ ଲହରୀ ମାଳେ
କାହିଁ ମହୋଦଧି ସଜାଏ ନୀଳା ହୀରା ପ୍ରବାଳେ ।
ନିର୍ଝର ସେବିତ ମଞ୍ଜୁଳ ଘଞ୍ଚ ଶ୍ରୀଫଳ ବନ
ନିରନ୍ତର ଯହିଁ ଶୀତଳ ଛାୟା ଚିର-ଶୋଭନ ।

ପର୍ବତ କନ୍ଦରେ କନ୍ଦରେ ଖୋଲେ ଖୋଲେ ନରତ
ସୁରଙ୍ଗ ସୁରଭି ମଦିରା ଭରେ କି ଅବନତ ।
ଗିରିବର୍ତ୍ମେ ଗିରିସଂକଟ ରୁକ୍ଷ ଶରୀରେ ହାଣି
କେତେ କାହିଁ ଖୋଳା ହୋଇଛି ଅନୁଶାସନବାଣୀ ।

ବୀଚିବେଣୀ କମ୍ପେ ନିମ୍ନଗା ରଚେ ଚପଳ ଗତି
ଯେସନ ଯୌବନ-ପରଶେ ମୁଗ୍ଧା ତରୁଣୀ ମତି ।
ଶ୍ୟାମଳ ଉଜ୍ଜ୍ୱଳ ରାଇଜ ନିତେଜାପ୍ରଳା ସେବାତ,
ଧର୍ମେ କର୍ମେ ଯଶେ ହୋଇଛି ଯେହୁ ବିଶ୍ୱ-ବନ୍ଦିତ

ଦେଶ ଜାତି କୁଳ ସମାଜ ପରମ୍ପରା ପ୍ରବାହେ
ଏହି ମୋ ଭାରତେ ଓଡ଼ିଆଜାତି ସମ୍ପଦେ—ଥାଏ ।
କାହିଁ କେଉଁଠାରୁ ଆସିଲ ଆହେ ଫିରିଙ୍ଗି ଦଳ
ଧରି ବ୍ୟବସାୟ ରାଜ୍ୟ ନୀତି, ଗୋରା ଶାସନ କଳ ?

କ ଧର୍ମ କ କର୍ମ ସାଧନେ ସଂସ୍କୃତିର ବିକାଶେ
ସେ ଜାତି ଅତୁଳ ଆଦର୍ଶ ଦେଖାଇଛି ଏ ଦେଶେ
କାହିଁକି ତୁମେ ହେ ଅବୁଝା ଏତେ ଫିରିଙ୍ଗି ଦଳ
ମାରି ହାଣି ସେହି ଜାତିକୁ କରୁଅଛ ଦୁର୍ବଳ ?

ପୁରାଣ-ପ୍ରସିଦ୍ଧ ପବିତ୍ର ପରା ଏହି ଭାରତ
ଇତିହାସ ଯାର ସତତ ମୋହିଅଛି ଜଗତ,
ନୀଳ ରତ୍ନାକର ନିରତ ଯାର ପଦଚୁମ୍ବନେ
ମହାଯଶ ପୂର୍ବେ ଯାହାର ଶ୍ରୁତ ବିଶ୍ୱଭୁବନେ,

ଗଙ୍ଗା ବ୍ରହ୍ମପୁତ୍ର ଯମୁନା, ସ୍ୱର୍ଣ୍ଣରସେ ଉର୍ବର
ଯାହାର ପୂଜିତ ମୂର୍ତ୍ତିକା ତୀର୍ଥ ଜଳେ ଜର୍ଜର
ସେ ଭାରତ ବକ୍ଷେ ମୋହର ପ୍ରିୟ ଉତ୍କଳ ଧରା
ଜୀବନର ସ୍ମୃତି କଳାରେ ନୀତି ସଜ୍ଜିତ ପରା ।

ଯାର ଏହି ଦେଶ ସନ୍ତାନେ ଯୋଦ୍ଧା ପାଇକମଣି
ବୀରତ୍ୱରେ ତାଙ୍କୁ ଜଗତେ ସର୍ବେ ଅଛନ୍ତି ଗଣି ।
ଏହିମାନେ ପରା ନାବିକ ଏହିମାନେ ପାଇକ
ଏହିମାନେ ଶିଳ୍ପୀ କୋବିଦ ପୁଣି ଚିର ରସିକ ।

ପଣ୍ଡିତ ପ୍ରବର, ତପସ୍ୱୀ, ଗବେଷକ ପୂଜକ ।
ଅଧ୍ୟାପକ, ଯୋଗୀ, ସନ୍ୟାସୀ, କେବା ପରିବ୍ରାଜକ
ପାଠ ପଢୁଥିଲେ ଦୁର୍ବୋଧ୍ୟ ଶାସ୍ତ୍ର ବିଦ୍ୱାନଦଳ,
ଛବି ଆଙ୍କୁଥିଲେ ଫୁଟାଇ ଦଳେ ଶିଳ୍ପୀଙ୍କର ।

ଚତୁଷ୍ପାଠୀପରେ ବିଦ୍ୱାନ ବସି ଦଳକୁ ଦଳ
ଗୁରୁ ଆଲୋଚନା କରନ୍ତି ଶାସ୍ତ୍ର ଚର୍ଚ୍ଚା ନିର୍ମଳ ।
ଆଉ ଦଳେ ଅଭିନିବେଶେ କରି ଗୁରୁଙ୍କ ସାଧନା
ମହା କାବ୍ୟ ଗ୍ରନ୍ଥ କବିତା କରୁଥିଲେ ରଚନା ।

ସେ ସବୁତ ଆଜି ଶୟନେ ସୁଖ ସପନ ସରି
ଗୋଟି ଗୋଟି ହୋଇ କଳ୍ପନା ପଟେ ଉଠୁଛି ଥରି
ଶେଷ ହେଲେ ଏହି ତ୍ରିଯାମା କାଲି ଶୁଭ୍ର ପ୍ରଭାତେ
ମୁହିଁ ପୁଣି ଦୂରେ ପ୍ରେରିତ ହେବି ପ୍ରହରୀ ହାତେ ।

ମୋତେ ନେଇଯିବେ ପ୍ରହରୀ ଦୂରର ବୋଇତପୁରେ
ସିନ୍ଧୁ କଳାପାଣି କୋଳରେ କେଉଁ ଅଜଣା ପୁରେ ।
ପ୍ରବର୍ତ୍ତିଲା ଏବେ ରଜନୀ ମାଙ୍ଗଳିକ ଉତ୍ସବେ
ରଶ୍ମି ଯାଏ ଖେଳି ପଲକେ ଦୂରପ୍ରସାରୀ ନଭେ,

ଫୁଟି ଫୁଟି ଆସେ କ୍ରମଶଃ ପ୍ରାଚୀ ବଦନୁଜ୍ୟୋତି
ଦୁର୍ବାଦଳ ଶେଯେ ପଡ଼ିଛି ଶତ ଶିଶିରମୋତି ।
ଭ୍ରମର ବସଇ ସରାଗେ, ସଦ୍ୟ ବିକଚ ଫୁଲେ
ପ୍ରେମିକ ଯେସନ ପ୍ରେମିକା ପାଶେ ପ୍ରକ୍ଷେପ୍ୟେ ଭୁଲେ ।

ମନ୍ଦ ମନ୍ଦ ବାତ ପ୍ରସରେ ସଦା ଗନ୍ଧସ୍ଫୁରିତ
ସିନ୍ଧୁ ଆଣେ ନୀଳ ତଟିନୀ ନିତ୍ୟ ଅନୁସରିତ ।
ସାଲକ ମଞ୍ଜୀରେ ଜାଗଇ ଉଷା ନବ ଜୀବନ
କୃଷୀ ଯାଏ ତାର କେଦାରେ କୃଷିକର୍ମେ ବହନ ·

ଷଣ୍ଡ୍ରାଯୁକ୍ତ ଘର କୁମର ଯାଇ ଆଖଡ଼ା ଘରେ
ପରଖ କରୁଛି ତୃଷ୍ଣା ଷଣ୍ଡ୍ରା ପଠକ ଥରେ ।
ମୁରଲକ୍ଷ୍ମୀ ଭରି ଜାନୁତି, ଖେଳେ ଏହି ପ୍ରଭାତେ
ଧାନକ୍ଷେତ ଦୃଶ୍ୟ ରୁଚିର ଶୁଭ୍ର ଶିଶିର ପାତେ ।

ଗତ ରାତ୍ରି ମାତ୍ର ଅନିଦ୍ରା ଥିଲେ ସେ ପାଠେଶାଣୀ
କଳ୍ପନା ତରଙ୍ଗ ବହଇ ନିଦ୍ରା ସ୍ରୋତେ ଉଜାଣି
ଚିନ୍ତାଜାଲେ ପଡ଼ି ଚଞ୍ଚଳ ମନବିହଗ ପରି
ସ୍ମରି ହେଉଥିଲା ନିଜର ପରାଜୟ ଅସରି ।

ପ୍ରଭାତେ ଉଠି ସେ ଦେଖନ୍ତି ସ୍ପୃଷ୍ଠ ରାଜାବିଦ୍ରଣା
ଆସିଛି କି କହିଛି ବାରତା ସ୍ୱର୍ଣ୍ଣମୟୀ ସେ ଉଷା ।
ପାଠେଶାଣୀ ଆଜି ପ୍ରହରୀ ମେଳେ ଦରଦୀ ବନ୍ଦୀ
କଳାପାଣି ହେବେ ପ୍ରେରିତ ଉଠେ ଅନ୍ତର କାନ୍ଦି ।

ଅନ୍ତରେ ଜାଗଇ ସ୍ମୃତି ସେ ଭରା ଅସହ୍ୟ ବ୍ୟଥା
ସାଗରେ ଯେସନ କଲ୍ଲୋଳ, ସ୍ମୃତି ବେଦନାତଥା
ବହୁତ ଦିନର ଆଘାତ ବହୁଦିନର ଦୁଃଖ
ସେ କେଉଁ ସରଳ କୁଟୀର କୋଣେ ଗୋଟିଏ ମୁଖ,

ସେ କେଉଁ ନିର୍ଜନ କୁଟୀର ପ୍ରାଙ୍ଗଣରେ ନିହିତ
ଗୋଟିଏ ଶୋକାଳୁପ ବଦନ, ଅଶ୍ରୁ ତରଙ୍ଗାୟିତ
ସେ କେଉଁ କୁଟୀର କୋଣରେ ଚିନ୍ତାଶୈବାଳଘେରା
ପଡ଼ିଛି ନଳିନୀ ସଦୃଶ—ସତୀ ଏକ ବଧୂରା ।

ଆହା ସେହି ମୁଖ ଗୋଟିଏ ଲକ୍ଷ ସୁଖର ଉତ୍ସ
ଆଜି କାନ୍ଦୁଥିବ ବିରହେ କରି ଜୀବନ ତୁଚ୍ଛ !
ହାହାକାରମୟ ଗୋଟିଏ ଅନ୍ତରର ବେଦନା
ଗୋଟିଏ କୋମଳ ପ୍ରାଣର କେତେ ଅବମାନନା ।

ସେହି ମୁଖ ସେହି ଦୁଇଟି କଳା କଜଳ ଆଖି
ଆଜି କିବା ହେଉ ନଥିବ, ଅଶ୍ରୁ-ଗହ୍ୱନେ ଲଖି ।
କେଉଁ ଦୂରପଲ୍ଲୀ କୁଟୀରେ ବନ କେଦାର ପାରେ
ଅଭିମାନିନୀ ମୋ ଅଭାବେ ଝୁରୁଥିବ ଆସାରେ ।

ଭାବୁ ଭାବୁ ପ୍ରିୟ ମାନିନୀ, ଚିର ଦୁଃଖିନୀ କଥା
ଦୁଇଧାର ଲୁହ ଝରିଲା ଧୋଇ ଆଖିର ପତା ।
ଆହା ସତେ ନାରୀ କୋମଳ, ସ୍ନେହବଶପ୍ରାଣାର
ହୋଇଥିବ କିବା ଅବସ୍ଥା, ସହି ଏ ଦୁଃଖ ଭାର !

ଥାଅ ଥାଅ ଜନ୍ମଭୂମିଲୋ, ଥାଅ ମୋ ପଲ୍ଲୀ ରାଣୀ
ନୀକଣ୍ଠ ଯେତିକି ବିଦାୟ,ହୃଦେ ସେତିକି ବାଣୀ,
ବାଷ୍ପାକୁଳ କଣ୍ଠ ମୋହର, ଉଠେ ଅଶାନ୍ତ କୋହ
ଶେଷ ଦିନେ; ଆଜି ପ୍ରଥମେ ଜାଗେ ଅନନ୍ତ ମୋହ !

ଅଭ୍ୟୁଭଗ୍ନ ତୋ କୋଳର ହୁଏ ଯେତିକି ଦୂର,
ତୋହ୍ର କୋଳପାଇଁ ସେତିକି ହୁଏ ବିଷୟାତୁର—
ସ୍ୱଖଣ୍ଡେ ସ୍ୱଖଣ୍ଡେ ଯେତିକି ଯାଏ ଆଗକୁ ମାଡ଼ି
ସେତିକି ମୋ ହୃଦୁ କିଏ ସେ ହୃଦ ରଖଇ କାଢ଼ି

ପଡ଼ିଯାଏ କିବା ପତ୍ର, ପୁଷ୍ପ କେଶରୁ ଢ଼ଳି
ଶିରୀହୀନ ଖାଲି ପାଖୁଡ଼ା, ଯାଏ ଆଗକୁ ଚଳି ।
ଏଠି ରହିଯାଏ ମୋହର ଜୀବନର ସପନ
ସେନା ଜୀବନର ସ୍ୱପନ, ପ୍ରୀତି ପୁଣ୍ୟ ପତ୍ରଗ ।

ଏଠି ରହିଯାଏ ପରାଣ, ଏହି କୁଞ୍ଜେ କାନନେ,
ଶରୀର ଯାଉଛି ସୁଦୂରେ, ପ୍ରହରୀର ବନ୍ଧନେ ।
ଥାଅ ଥାଅ ଜନ୍ମଭୂମିଲୋ, ଥାଅ ମୋ ପଲ୍ଲୀରାଣୀ
ତୁମପାଇଁ ବହୁଥାଉ ମୋ ବେନି ନୟନୁ ପାଣି ।

ବୁଡ଼ି ବୁଡ଼ି ଯାଅ ଭାସ୍କର ଅସ୍ତାଚଳ ଶିଖରେ
ହସି ହସି ଆସ ଚନ୍ଦ୍ରମା ପ୍ରାଚୀ କୋଳୁ ସୁଖରେ ।
ଲାଗିଥାଉ ମୋର ଦେଶରେ ଏହି ପ୍ରକୃତି ଲୀଳା
ମଳୟ ପବନେ, ଶିହରୁ ନଦୀ ସ୍ୱଚ୍ଛ-ସଲିଳ ।

ଥାଅ ଥାଅ ଜନ୍ମଭୂମିଲୋ କୀର୍ତ୍ତିରୂପିଣୀ ସଦା
ବିଦାୟ ନେଉଛି ଅଧମ, ମନ ତୋପଦେ ବନ୍ଧା ।
ରହିଯାଉ ଇତିହାସରେ ପାଠଶାଳୀ ମେଲାଣି
ଦେଶ ଦଶ ପାଇଁ ବିପ୍ଳବୀ ବରେ ମରଣ ଜାଣି ।



# ନବମ ସର୍ଗ

ଦିଗନ୍ତ ବିସ୍ତୃତ ସିନ୍ଧୁ ଅଖଣ୍ଡ ଅଶାନ୍ତ
ପର୍ବତ ସମାନ ବୀଚି ଦୁର୍ଦ୍ଦମ ଦୁର୍ଦ୍ଦାନ୍ତ ।
ବୀଚି ପରେ ବୀଚି କାହିଁ ଜମରକ୍ଷା ସହ
ବେଳୁ ବେଳ ମାଡ଼ି ଆସେ ମହା ଦୁର୍ବିସହ ।

ଅଗାଧ ଅର୍ଣ୍ଣବ ରଙ୍ଗେ ସଦା ନୃତ୍ୟଶୀଳ
ପ୍ରଭଞ୍ଜନ ବିଧୂନିତ ସାଗର କଲ୍ଲୋଳ ।
ଅଶାନ୍ତ ଗର୍ଜନକାରୀ ଅମ୍ବୁଧି ଅନନ୍ତ
ମାତୃହରା ଶିଶୁସମ ଅଧୈର୍ଯ୍ୟ ଅଶାନ୍ତ ।

ଚତୁର୍ଦ୍ଦିଗେ ଜଳରାଶି ନୀଳ ଜଳାରଣ୍ୟ
ବରୁଣ ଦେବତା ଲବ୍ଧ ଅସାମାନ୍ୟ ପଣ୍ୟ ।
ପ୍ରତିକ୍ଷଣେ ପ୍ରକମ୍ପିତ ପ୍ରପୀଡ଼ିତ ସ୍ରୋତ
ସ୍ରୋତମଧ୍ୟେ ଦ୍ୱୀପ, ଯେସନ୍ତେ ଅସହାୟ ପୋତ

ପ୍ରତିକ୍ଷଣେ ଅନଶ୍ଚିତ ଆଶଙ୍କାସଙ୍କୁଳ
ଦ୍ୱୀପ ବକ୍ଷେ ସିନ୍ଧୁ ମାରେ ବଜ୍ରାଘାତ ଶୂଳ ।
ନିର୍ଜ୍ଜନ ଦୁଃସହ ଦ୍ୱୀପ ଆଣ୍ଡାମାନ ଦୂର
ସିନ୍ଧୁ ଗର୍ଭୁ ଉତ୍ଥିତ କି ନନ୍ଦ୍ୟ ଅସୁର ।

ଚତୁର୍ଦ୍ଦିଗେ ଦିଶେ ନାହିଁ କାହିଁ ସ୍ଥଳରୂପ
ଦିଗ୍‌ଚକ୍ର ଶ୍ୟାମାଯ୍ନମାନ ଲହରୀ ଲୋଲୁପ ।
ସନ୍ଧ୍ୟାତାରା ଚୁମ୍ବେ ନିତ୍ୟ ନୀଳୋଜ୍ଜ୍ୱଳ ରେଖା
କାହିଁ କେବେ ଜୀବନର ନ ପଡ଼ଇ ଦେଖା ?

ଉପଳ ବ୍ୟଥିତ ବାରି ସିନ୍ଧୁ ପ୍ରବାହିନୀ
ଚନ୍ଦ୍ରିକରେଭାସୀ ଶୁଭ୍ର ଜ୍ୟୋତ୍ସ୍ନା-ନିର୍ଝରିଣୀ ।
ଆବରିଛି ଜଳଭାଗ, ସ୍ଥଳଭାଗ ତ୍ରାସେ
ସୀମାରେଖା ସମ ଥିବୁ ଚକ୍ରବାଳ ପାଶେ ।

ଧ୍ୟାନମଗ୍ନ ଜଳରାଶି ଶାନ୍ତ ତପୋରତ,
ବସୁନ୍ଧରା ଚକ୍ରବାଳ ମଧ୍ୟେ ଅନୁଗତ ।
ଅତନ୍ଦ୍ରିତ ଋଷି ଯୋଗୀ ହୋଇ ଯୁକ୍ତ ଯୋଗ
ପରିତ୍ୟକ୍ତ ଦ୍ୱୀପେ କିବା କରୁଛନ୍ତି ଭୋଗ—

ଶୂନ୍ୟ ଭ୍ରମବାସ, ମୁନି ଜିତେନ୍ଦ୍ରିୟ ଧାନେ
ପରିତ୍ୟକ୍ତ ଦ୍ୱୀପ ମଧ୍ୟେ କାହାର ସନ୍ଧାନେ ?
ନଭପଥଚାରୀ ପାନ୍ଥ ବିହଙ୍ଗ ଦଳର
ନୟନ ଅତିଥି ଏହି ବାରିଧି ଅତଳ ।

ଯା ସଙ୍ଗୀତ କଳଧ୍ୱନି ଶୁଣି ହୋଇ ଛନ୍ନ
ଆକାଶ ବିହାରୀ ଖଗ ବିସ୍ମୟ ବିପନ୍ନ ।
ତୁହିନ ଶୀତଳ ଶଯ୍ୟା ସିନ୍ଧୁ ସୁବିସ୍ତୃତ
ଫେନ ସଦ୍ୟ ସ୍ଫୁଟ ପୁଷ୍ପ କିବା ପୁଞ୍ଜୀଭୂତ ।

ସାଗର ଦୁହିତା ଲାଗି କିବା ସ୍ରଷ୍ଟାବର ?
ରଚିଛନ୍ତି ଏହି ସିନ୍ଧୁଦୋଳା— ଢଳଢଳ ।
ଦିଗନ୍ତ ବିସ୍ତାରୀ ଚନ୍ଦ୍ରବିମ୍ବ ବିସ୍ତାରିତ
କ୍ଷୀରୋଦ ଶୟନେ କିବା ରମାପତି ସୁପ୍ତ ?

ଭାସ୍କର ଦୀପିତ କେବେ ମୟୂଖେ ରଯାକ୍ଷ
ଶୋଣିତାର୍ଦ୍ରହେତ ଯୁଦ୍ଧ ପ୍ରାଙ୍ଗଣ ନିଶାକ୍ଷ ।
ଫେନୋଦ୍‌ଗାରୀ ମୁଖ ତହିଁ ରୁଧିରାକ୍ତ ସଦା
ପ୍ରକମ୍ପିତ ଅବା ବିଗଳିତ ଶତଦ୍ରୁଦା ।

ମନୁଷ୍ୟ ନିର୍ଜନତାଭରା ଦୂର ଦ୍ୱୀପ ଖଣ୍ଡ
ନିର୍ଜନତା ସହିଁ ଅସିଧାରୁ ବଳି ଚଣ୍ଡ ।
ନୀରବତା ଘନଘୋଷ ଭୈରବ ବାଜଣା
ଜଳାରକ୍ଷ୍ୟେ ଦିବାକର ମଧ୍ୟପଥ ବଣା ।

ସୂର୍ଯ୍ୟ ଶ୍ରେଷ୍ଠ ରଶ୍ମି କଣା ନାହିଁ ଭେଦି ପାରେ
ବଜ୍ର ଝଟିକାଶର ତହିଁ ଜୀର୍ଣ୍ଣ ହାହାକାରେ ।
ଭେଦ ଅସମର୍ଥ ତହିଁ ପ୍ରଳୟ ଜୀମୂତ
ନିଃଶ୍ୱାସ ସଂଗ୍ରହି କରେ ତହୁଁ ସେ ମରୁତ ।

ସମାଧି ସ୍ତବ୍ଧତା ଅବା ଅବସାନ ଶାନ୍ତି
ନିର୍ବାକ ନୀରବ ସ୍ନିଗ୍ଧ ସୀମାହୀନ ଭ୍ରାନ୍ତି ।
ବକ୍ଷେ ବହି ଦ୍ୱୀପଖଣ୍ଡ ଜନପଦୁଁ ସ୍ଥିତ
ତହିଁ ସେତେକ ଆଶାରାଶି ଗୋପନେ ପ୍ରୋଥିତ

କଲ୍ଲୋଳ ଭୂଧରାକାର ଉତ୍‌ଥିତ ଉନ୍ମତ୍ତ
ବାରିଧି ବାହୁକୁ କରେ ବିସ୍ତାର ଅଦ୍ଭୁତ ।
ନୀର ଆସ୍ତରଣ ପରେ ଦ୍ୱୀପ ବିରାଜିତ
ମର୍ତ୍ତ୍ୟଖଣ୍ଡେ ନର୍କ ବୋଲି କଥା ପ୍ରଚଳିତ ।

ତହିଁ ଦିବା ଶର୍ବରୀ ପ୍ରଦୋଷ ସମାନ
ସତେ କି ଧରଣୀ ତଳେ ପରେତଭୁବନ
ମଙ୍ଗଳ ବରଣା ଉଷା ଯେବେ ଚକ୍ରବାଳେ
ଆଦରେ କରନ୍ତି ଲୀଳା ବାଳ ରଶ୍ମିମାଳେ ।

ମୁକ୍ତ ହୁଏ କ୍ଷଣେ ପ୍ରାଚୀ ତୋରଣ ଅରୁଣ
ନିଦ୍ରା ଶେଷେ ଜାଗରିତ ଜୀବଜନ୍ତୁ ପୂର୍ଣ୍ଣ ।
ରବି ସ୍ୱର୍ଣ୍ଣମୟ ରଥ ହୁଏ ଅଗ୍ରସର
ପାଟଳ ସିନ୍ଦୁର ଫିଟେ, ବ୍ରୀଡ଼ା ଜରଜର ।

ସ୍ୱର୍ଣ୍ଣକାନ୍ତି ଉଷାବଧୂ ଅଭିନବ ରାଗର
ଦ୍ୱୀପ ଅଙ୍କେ ସଦ୍ୟୋଜାତ ଶିଶୁ ସମ ଜାଗେ ।
ବାଲିସ୍ତୂପେ ସୁସଜ୍ଜିତ ସିନ୍ଧୁ ବେଳା ପରେ .
ନନ୍ଦନ ପ୍ରଭାତ ଭୁଲେ ପ୍ରଭା କି ଭାସ୍କରେ ।

କ୍ରମେ କ୍ରମେ ଚକ୍ରବାଳ ରେଖା ଭେଦ କରି
ସହସା ସ୍ଫୁରଣ ହୁଏ ମୂର୍ତ୍ତି ନୀଳାମ୍ବରୀ ।
ଊର୍ମି କ୍ଷୁବ୍ଧ ରତ୍ନାକର-ମହାଭକ୍ତ ଧ୍ୟାନେ
ପ୍ରାଚୀପୀଠେ ପ୍ରଣିପାତ କରେ ଆତ୍ମଦାନେ ।

କ୍ରମେ ବାଳାତପ ବ୍ୟାପେ ପାରାବାରେ ମୂଦେ
ଅନୁତାପ ବ୍ୟାପେ ଯଥା ଅପରାଧୀ ହୃଦେ ।
ଅରବିନ୍ଦ ବନେ ବ୍ୟାପେ ପ୍ରାଚୀତୀର୍ଥ କର
ରଜନୀ ବଦନେ ରଶ୍ମି ସମ ନିରନ୍ତର ।

ବିଶ୍ୱଦ୍ୟୋତକ ମିହିର, ଉଠି ସିଂହାସନେ
ଶରମେ ଚାହାଁନ୍ତି ଏହି ଦ୍ୱୀପର ବଦନେ ।
ସେହି ଦ୍ୱୀପଖଣ୍ଡେ ଯହିଁ ଅପରାଧୀ ନର
ଦେଶପ୍ରେମୀ, ଜାତିପ୍ରେମୀ, ସାଧୁ ଶୁଭଙ୍କର,

ହୁଅନ୍ତି ନିର୍ଜ୍ଜନେ ବନ୍ଦୀ, ତୁଚ୍ଛ ଅଭିଯୋଗେ
ମିଥ୍ୟା ରାଜ୍ୟେ ସତ୍ୟ ନ୍ୟାୟ ଅନ୍ୱେଷଣ ଯୋଗେ ।
ଏହି ସେହି ଦ୍ୱୀପ ଯହିଁ ସ୍ତୂପୀକୃତ ହାଡ଼,
ଜୀବନ୍ତ ମାନବ ଶବ-ଆକାର ପାହାଡ଼ ।

ଯହିଁ ଯୋଗୀ ଧାନୀ ମାନୀ ସନ୍ୟାସୀ ରକତ
ସିନ୍ଧୁ ମଧ୍ୟେ ଫୁଟାଇଛି ମାଣିକ୍ୟ ମର୍କତ ।
ପ୍ରତିଭା ଲଲାଟ ଲେଖା ପଢ଼ି ଶତବାର
ଫୁର ନିର୍ବାସନେ ଲଭେ ମହା ପୁରସ୍କାର

ଦେଶ ପ୍ରେମୀ ନର ରକ୍ତ ଉର୍ବର ଜର୍ଜର
ସାକ୍ଷାତ ଶ୍ମଶାନ ସମ, ନିବଦ୍ଧ ପଞ୍ଜର !
ଯେହି ଦ୍ୱୀପେ ବନ୍ଦୀ ନିର୍ବାସିତ ପ ଠଶାଣୀ
କାଳ ଅହି ସମ ଗ୍ରାସେ ଯା'ରେ କଳାପାଣି ।

ପ୍ରଦୋଷ ଆସଇ ଘୋଟି ସମୁଦ୍ର ଅଧରେ
ସ୍ୱଦାସ୍ତ ଘେନଇ ରବି ଜଟିଳ ଶିଖରେ ।
ଅନୁମ ସୂର୍ଯ୍ୟର ବର୍ଣ୍ଣ ଆଲେଖ୍ୟ ମହାନ
ଚିତ୍ରିତ ସାଗରବକ୍ଷେ କରେ ରକ୍ତ ସ୍ନାନ ।

ଗୋଧୂଳି ଆଲେଖ୍ୟ ରେଖା ପଡ଼ି ସିନ୍ଧୁ ଜଳେ
ସାଧୁଜନ ହୃଦେ ସତ୍ୟ ସମ ପ୍ରତିଫଳେ ।
ଉଦ୍ଦୀପ୍ତ ସପ୍ତଚୀ ଅଙ୍କେ ଚନ୍ଦ୍ରମା ଶୋଭିତ
ଦୁଗ୍ଧ ଫେନ ନିଭ ଶେଯେ ଲକ୍ଷ୍ମୀ ଙ୍କ ଶାୟିତ ?

ଦିଗ୍‌ବଧୂ ବିଳାସ ସ୍ନିଗ୍ଧ ଦର୍ପଣର ସମ
ଅନନ୍ତ ଜଳଧି ଆଜି କେତେ ମନୋରମ,
ଦିନସାର ପ ଠଶାଣୀ ବକ୍ଷୋଷ ଚିନ୍ତିତ
ଯା'ଶେ ନାହିଁ କେହି ଜଣେ ଖୋଲିବାକୁ ଚିତ୍ତ ।

ବନ୍ଦୀ ସେହି ଶାସ୍ତି ପ୍ରାପ୍ତ କଳାପାଣି ଖଣ୍ଡେ
ସାଧୁର ଜୀବନ ବ୍ୟଥା ବୁଝିବନ୍ତୁ କ ଭଣ୍ଡେ ।
ଚତୁର୍ଦ୍ଦିଗେ ମହାସିନ୍ଧୁ ନୀଳ ଜଳାଧାର
ଧରିତ୍ରୀର ସତେ ଏକ ମୁକ୍ତ ପୂର୍ବଦ୍ୱାର ?

ସୃଷ୍ଟିର ଅଶାନ୍ତ ଅଗ୍ନି ଉପଶମ ପାଇଁ
ଏହି କ ଅକୂଳ ସିନ୍ଧୁ କଏ ଗଢ଼ିଥାଇ—?
ବନ୍ଦୀ ବୀର ସାଭରକର ଭିଜନତା କୋଳେ
ଆପଣାର ବନ୍ଦୀ ଦଶା ବେଦନାର ଖେଳେ ।

ଥାଆନ୍ତି ସେ ମହାଦୁଃଖେ ନିଃସଙ୍ଗ ଜୀବନେ
ଏକାନ୍ତ ଈଶ୍ୱର ଧ୍ୟାନ ଧାରଣା ସପନେ,
ଦ୍ୱୀପ ଖଣ୍ଡେ ପରିତ୍ୟକ୍ତ ସେହି ବୀରମଣି
ହୃଦୟର କୋଣେ ସଦା ପ୍ରିୟ ଜନ୍ମଭୂମି ।

ଦେଖନ୍ତା ପଣ୍ୟରେ ଭରା ସ୍ୱଦେଶର ପୋତ
ପ୍ରାଣକଥା ବହି ନେଇ ଯା'ନ୍ତା ସିନ୍ଧୁ ସ୍ରୋତ,
ହାୟ ହାୟ ବାସ୍ତବତା ମନ ମୂଳେ ହାଣେ
ମଶାଡି ଯେସନ ଦୃଢ଼େ ମଶକରେ ଠାଣେ ।

ବନ୍ଦୀର ଜୀବନ ହାୟ ଜୀବନ୍ତ ମରଣ
ମୁକ୍ତିର ମନ୍ଦିର ଆଗେ ତ୍ୟାଗର ତୋରଣ,
ସେ ତ୍ୟାଗର ପ୍ରତିମୂର୍ତ୍ତି ସାଭରକର ବୀର
ସହୁ ଥାନ୍ତି ଦ୍ୱୀପାନ୍ତରେ, ବକ୍ଷେ ଶୋକ ତୀର



# ଦଶମ ସର୍ଗ

( ରାଗ—କଳହଂସ କେଦାର )

ବିସ୍ତୃତ ଚତୁର୍ଦ୍ଦିଗେ ନୀଳାମ୍ବୁ ରାଶି
ଦିବସେ ଶୁଭ୍ର ସୌରକର ଉଦ୍‌ଭାସୀ ।
ନିଶୀଥେ ବିମଳସ୍ନାତ ଜ୍ୟୋତ୍ସ୍ନା ନିର୍ଝର
ପ୍ରକୃତି ଲୀଳା ଖେଳେ ଦ୍ୱୀପ ମୁଖର ।

ନିର୍ଜନ କଳାପାଣି ବିଜନ ସାଥୀ,
ବିଜନ ସାଥୀ ଦୃଢ଼ କରି ଯେ ଛନ୍ତି,
ରହିଛନ୍ତି ବନ୍ଦୀ ସେହି ଦ୍ୱୀପ ବନ୍ଧନେ
ଅଗ୍ନି କରୁଛନ୍ତି ଗ୍ରାସ କିବା ଇନ୍ଧନେ ।

କି ମହା ଅପେକ୍ଷାରେ ଦିବସ ନିଶି
ପ୍ରକୃତି ସାଥି ବାଆ ଝଙ୍କାରେ ମିଶି ।
ଜୀବନ କାଳ କରେ ଅତିବାହିତ
କଠୋର ସାଥୀହୀନ ଶୂନ୍ୟ ସହିତ ।

ସେସନ ବିଜନତା, ତାହାରି ସଙ୍ଗ
ତାହାରି ସଙ୍ଗ ଅବା ନୀଳ ତରଙ୍ଗ !
ତାହାରି ସଙ୍ଗ ନୀଳ ତରଙ୍ଗ ସ୍ୱନ,
ତରଙ୍ଗ ସ୍ୱନ ଜାତ ଛନ୍ଦ ମୋହନ ।

ଅପାର ଧୈର୍ଯ୍ୟଶାଳୀ ବୀର ମଣ୍ଡଳି
ସାଲକ ସ୍ୱାଧିକାଶ ଘନ କଳ୍କି ।
ତାଙ୍କର ଦୁଃଖ ଦଶ ଜଡ଼ିତ ଦିନ
ବିତଇ ଦ୍ୱୀପେ ଉଗ୍ର ସୌନ୍ଦର୍ଯ୍ୟ-ହୀନ ।

ଜୀବନ ଦୁଏ ସୃଷ୍ଟି ଏମରି ଶେଷ
ସ୍ୱଦେଶ ସେବାବ୍ରତ ଜନତ କ୍ଲେଶେ ।
ବିପ୍ଳବୀ ମାନେ ଥୁଆ କି କଳାପାଣି
ବନ୍ୟା ହେଢେଲି ନଦୀ ବହେ ଉଜାଣି ।

ଥାଆନ୍ତି ସାଠିଶାଣୀ ସେ ଦ୍ୱୀପ ପୂରେ
ମିଶାଇ ନିଜ କଣ୍ଠ ଶୂନ୍ୟର ସ୍ୱରେ ।
ମାନବ ପରିତ୍ୟକ୍ତ ଅଜଣା ଦ୍ୱୀପ,
ନର ରଚିତ ତାହା କି ଅଭିଶାପ ।

ଯହିଁ ସ୍ପୃହିଲେ ତହିଁ ସିନ୍ଧୁ ବିସ୍ତାର,
ଧରିଣ କବା ରୁଦ୍ର ତରଙ୍ଗାକାର,
ଆକାଶ ବିହଙ୍ଗମ ଆକାଶେ ଖେଳେ,
ହେମ ତପନ ଚନ୍ଦ୍ର ତାରକା ମେଳେ ।

ଯାବତ ଜଳଚର ସମୁଦ୍ରବାସୀ
ସକଳ ଜଳାରଣ୍ୟେ ସ୍ନେହ ପ୍ରକାଶି,
ଖେଳନ୍ତି ମହାଖେଳ ବାରି ଉତ୍ସବେ,
ଖେଳନ୍ତି ଜୀବଜନ୍ତୁ ଯେସନେ ଭବେ ।

କଳାପାଣି ତିମିରେ ହୋଇ ଆବଦ୍ଧ,
ବନ୍ଦୀ ଜୀବନ କି ହରାଏ ଛନ୍ଦ,
ତଥାପି ଅପେକ୍ଷାରେ କାଟଇ କାଳ,
ସଙ୍ଗତେ ଯେମନ ଯେତେ ବିଶ୍ୱଜଞ୍ଜାଳ ।

ତରଙ୍ଗ ଦୋଳା-ଦୋଳାୟିତ ବିହଙ୍ଗ
ଯୁଗଳ ଖେଳ କରୁଛନ୍ତି କି ରଙ୍ଗ,
ପ୍ରବାଳ ସମ ସେହି ତରଙ୍ଗ ଦୋଳା,
ତହିଁକି ଶଙ୍ଖ ଗୁପ କରଇ ଲୀଳା ।

କାହିଁ ଅଧୀରେ ଉଠେ ବିହଙ୍ଗ କଳ,
ବିହଙ୍ଗ କଳ ଯୁକ୍ତ ସାଗର ଜଳ,
ସାଗର ଜଳ ଜାତ ବୀଚି କମ୍ପନ
ବୀଚି ବିହଙ୍ଗେ ଯହିଁ ସିନ୍ଧୁ ଦୋଳନ ।

ଚିର ଶୃଙ୍ଖଳାମୟୀ ପ୍ରକୃତି-ଲୀଳା-
ରହସ୍ୟ ଉଦଘାଟନକାରୀ ସେ ବେଲା,
ବେଲା ବିସ୍ତୃତ ବାଲୁତର ଗହନ,
ଯହିଁ କରଇ କୃଷ୍ଣସର ନର୍ତ୍ତନ !

ବିଷମ ପ୍ରକୃତିର ସୁଷମ ଅଙ୍କେ
ଆବଦ୍ଧ ପାଠଶାଳୀ, ଶାସ୍ତିର ପଙ୍କେ,
ମର୍ଜନେ ହାହାକାରେ ବିତେ ଜୀବନ,
ଜୀବନ ନୁହେଁ, ଅନୁଦିନ ମରଣ ।

କ୍ଷୋଭ ଜଡ଼ିତ ମନ ନୈରାଶ୍ୟ ମ୍ଳାନ,
ବର୍ଷଣ ପୂର୍ବ ମେଘ ଶ୍ରେଣୀ ସମାନ,
ଜଳୀୟ ବାଷ୍ପ ଘନୀଭୂତ ବର୍ଷଇ
କିନ୍ତୁ ଏ ମନେ କିବା ସୌନ୍ଦର୍ଯ୍ୟ ବହି ।

ଧରାଧାମେ ନରକ ସେ କଳାପାଣି
ରହେ କି ତହିଁ ରକ୍ତ ମାଂସର ପ୍ରାଣୀ ?
ଦେହ ଓ ମନ ଘେନ ମଣିଷ ସୁର,
ତହିଁକି ପାରେ ରହି କେହି ବିଧୁର ।

ପ୍ରହରୀ ଯେତୁ ଅବା ଥାଆନ୍ତି ତହିଁ
ଶାନ୍ତି ଶୃଙ୍ଖଳ ନାମେ କେତନ ବହି,
ନିରତ ଜଗୁଆଳ ବେଶେ ନିଷ୍ଠୁର
ନୁହେଁ କି କେବେ ତାଙ୍କ ପ୍ରାଣ ଆତୁର

ପ୍ରକୃତି ଶିଶୁ ସାଥୀ ପାଦପଲତା
ପାଦପଲତା ସାଥେ ସେ ନିର୍ଜନତା
ଯହିଁ କରନ୍ତି ଭୟ ରହିବା ପାଇଁ
ମସ୍ତିଷ୍କ ପୂର୍ଣ୍ଣ ତହିଁ ଆବଦ୍ଧ ଥାଇ ।

କୁସୁମ ଫୁଟେ ଯହିଁ ସ୍ୱର୍ଣ୍ଣ କିରଣେ
ସିନ୍ଧୁବକ୍ଷ ପଦକ ସମ ଜ୍ୱଳନେ ।
ନୀଳ ହରିତ, ପୀତ ବର୍ଣ୍ଣ ବିବିଧ
କୁସୁମ ନୁହେଁ ତହିଁ ଗନ୍ଧପ୍ରସିଦ୍ଧ ।

ତପନ ଅନୁରୋଧେ ପ୍ରକୃତି କୋଳେ
ଫୁଟଇ ଯେବେ ଅବା କୁସୁମ ଭୋଳେ
ତା ମଧୁଗନ୍ଧ ଆଶେ ଭ୍ରମର ଦଳ
ଆସନ୍ତି ନାହିଁ ସତ୍ୟ କଥା ପ୍ରଚଳ ।

ପ୍ରକୃତି ବକ୍ଷେ ତହିଁ କେବେ ବିଳସି
ନ ବହେ ଲଘୁ ବାତ ହୋଇ ସାହସୀ ।
କାଳେ ଦ୍ୱୀପର ଶୂନ୍ୟ କରିବ ଗ୍ରାସ
ଉତ୍ତାଳ ଝଡ଼େ ଉଡ଼ିଯିବ ନିଃଶ୍ୱାସ ।

ଉଠଇ ଚତୁର୍ଦ୍ଦିଗେ କି ହାହାକାର
ବିଦୀର୍ଣ୍ଣ ବକ୍ଷ କିବା ହୁଏ କାହାର ।
ପକ୍ଷ ଚ୍ଛେଦୀ ମଘବା ଭୟେ କି ଶୈଳେ
ତହିଁ ସନ୍ତ୍ରସ୍ତ ନିତ୍ୟ ଉଦୟ ବେଳେ ।

ଧରିତ୍ରୀ ଗର୍ଭ ଚିରି ବେଦନା ଘେନି,
ଉଠୁଛି ପ୍ରତିକ୍ଷଣେ ଶଙ୍କା ପ୍ରଧ୍ୱନି ।
ତେଣୁ ଏ ଦ୍ୱୀପ ଖଣ୍ଡେ ପଡ଼େ ଚହଳ
ଓଲଟ ପାଲଟ କି ସେ ଜଳ ସ୍ଥଳ ।

ବିଦ୍ରୂପ କରେ ସାଗର ଚୌଦିଗ କାନ୍ତି
ନିର୍ଜନ ଅନ୍ତରାଳେ ସ୍ତବ୍ଧତା ଧାନ୍ତି ।
ରହସ୍ୟ ଆଚ୍ଛାଦିତ ଏ ଦ୍ୱୀପ ଖଣ୍ଡେ
ମଣିଷ ପଛେ ଯେତେକ ଶାସ୍ତି ପ୍ରଚଣ୍ଡେ ।

ଜାନ୍ତ ଭର୍ତ୍ସିତ ବଧୂବର କାମିନୀ
ଜୀବନେ ହେୟ ମଣି ଦୁଃଖେ ମାନିନୀ,
ସ୍ନିଗ୍ଧ ସଲିଳ ତୀର୍ଥେ ତାର ଜୀବନ,
କରଇ ବିସର୍ଜନ ବିଷାଦ ଘନ ।

ଦେଖି କି ବ୍ୟୋମ ଏହି ଦୃଶ୍ୟକରୁଣ,
ଆବର ଦେଖି ଏଥି ଅଗ୍ନି ବରୁଣ ।
ସମ୍ମିତ ହେଲେ ଯେବେ ମାନିନୀ ତ୍ୟାଗେ,
ତେଣୁ କି ସମବ୍ୟଥା ସର୍ବସ୍ୱ ଜାଗେ ।

ବିରାଟ ଆକର୍ଷଣେ ବ୍ୟୋମ ବିପୁଳ,
ତେଣୁ କି ମାନିନୀର କେଶାଗ୍ର—ଚୁଳ ?
ଧରି ଉଠାଏ ଊର୍ଦ୍ଧ୍ୱେ ସମୁଦ୍ର ବକ୍ଷେ
ଅଭିମାନିନୀ ମାନ ରକ୍ଷଣ ଲକ୍ଷ୍ୟେ ।

ପ୍ରକୃତି ଅଭିଶାପେ ନିର୍ଜନ ଭୂତଳେ
ଥାଆନ୍ତି ପାଠଶାଣୀ ସଦା ବସନ୍ତେ
ଅଶ୍ରୁତ ଅଦୃଷ୍ଟ ସେ ମହାଜୀବନ
ସେ ଜୀବନ ମାଧୁରୀ ତାଙ୍କ ଭୂଷଣ ।

ବେଳେ ଭାବନ୍ତି ହେବେ ସେ ଅଧୀଶ୍ୱର
ଅନନ୍ତ ପରିବ୍ୟାପ୍ତ ଚଉଦିଗର,
ପଶୁପକ୍ଷୀ ଆବର କୀଟ ପତଙ୍ଗ
ସଦା ନର୍ତ୍ତନ ଶୀଳ ନୀଳତରଙ୍ଗ

ସର୍ବର ସେ ନୀରବ ଦ୍ରଷ୍ଟା ସନ୍ତତ,
ହୋଇଲା ଦ୍ୱୀପ ତାଙ୍କ ଜୀବନ ଗତ ।
ପ୍ରେତାତ୍ମା ସମ କିବା ସେ ତହିଁ ସ୍ଥିତ
ପ୍ରେତର ସେହୁ କିବା ଶେଷ ଉଚ୍ଛିଷ୍ଟ ।

ସ୍ଥାଣୁର ସ୍ଥାଣୁ ସେହୁ କାଳିମା ଅଂଶ
ଏ ଦ୍ୱୀପେ ସ୍ଥାପୁଛି କି ରାଜନ୍ୟ ବଂଶ,
ବୁଝାଇ ହେବ ନାହିଁ ବଚନ ବଳେ,
ମାନବ ପ୍ରତିନିଧି ଏ ଦ୍ୱୀପ ସ୍ଥଳେ ।

କିମ୍ଭୂତ କିମାକାର ମାନବ ତହିଁ,
ବନ୍ଦୀର ପୁଣି ବ୍ୟଥା କହି ନୁହଇ,
ଅତଳ ସିନ୍ଧୁ ଗର୍ଭେ ତ୍ୟକ୍ତ ନିର୍ଜନ,
ବନ୍ଦୀର ଆଶା ଯହିଁ ବନସ୍ୱେଦନ ।

କୋଠରୀ ଗର୍ଭ ଅନ୍ଧକାରେ ପୀଡ଼ିତ
ବନ୍ଧୁ ଶର୍ବରୀ ଶାପେ ଘନ-ଜଡ଼ିତ"
ବିପ୍ଳବୀ ପାଠଶାଣୀ, କାଟନ୍ତି କାଳ
କାଳ ନୁହେ ସେ ମୃତ୍ୟୁ କ ବିକଟାଳ ।
ଅଗ୍ନି ଉତ୍ତପ୍ତ ଲୌହ ପାତ୍ରେ ସଜ୍ଜିତ
ସଦ୍ୟ ଜୀବନ୍ତ ମତ୍ସ୍ୟ ହୋଇ ତାପିତ,
ବେଲୁବେଳ ସେ ପାତ୍ରେ ଯାଉଛି ଲାଖି
ଅଗ୍ନିଦାହିକା ଶକ୍ତି-ପ୍ରତ୍ୟକ୍ଷ ସାକ୍ଷୀ ।
ପିଂଜରା ବଦ୍ଧ ବନ୍ଦୀ ସିଂହ ସଦୃଶ
ଲାବଣ୍ୟତନୁକରି କୃଶରୁ କୃଶ
ଆୟସ ଦ୍ୱାର ଫାଙ୍କେ ଖୋଜଇ ଧ୍ୟାନେ
ଉଦ୍ଧାର ମୁକ୍ତି ମାର୍ଗ; ବେଦନା ତାନେ ।
ଆବଦ୍ଧ ପାଠଶାଣୀ ନିର୍ଜନ ଦ୍ୱୀପେ
ଶରୀର କୃଶ କରି ରକ୍ଷୀ ସମୀପେ,
ବଂଚନ୍ତି ପ୍ରତିଦିନ ମରିବା ପାଇଁ,
ବିଶାଳ ବକ୍ଷେ ଦେଶ ସ୍ମୃତି ଦୃଶ୍ୟଇ ।
ସମୁଦ୍ର ଗର୍ଭସ୍ଥିତ କାରା ଗହ୍ୱରେ
କେସନ ଦିନ ବିତେ ବିଷାଦ ଭରେ,
ପ୍ରତି ମୁହୂର୍ତ୍ତେ ଖୋଜି ମୁକ୍ତି ଉପାୟ,
ବ୍ୟର୍ଥ ବିଫଳ ହୁଏ ହାୟରେ ହାୟ ?
ଯେତିକି ଜୀବନ୍ତ ସେ ତେତିକି ଦୁଃଖ
ବନ୍ଦିନୀ ଦର୍ପଣେ କି ସମଗ୍ର ମୁଖ
ନିସ୍ତରଙ୍ଗ ସଲିଳେ ଯେସନ ଛାୟା
ବିସ୍ମୃତ ହୋଇ ପଡ଼େ ବିସ୍ତାରିକାୟା ।

ନୀରବ ଚଉପାଶ ନିର୍ଜନ ଦେଶ
ଧରିଛି ସର୍ବ ରୁକ୍ଷ ନୀରସ ବେଶ
ଦିବସେ ସୁଦ୍ଧା ପଥିକ ଉପୁଜେ ଭୀତି
ଜୀବନ୍ତ ମୃତ୍ୟୁ ସିନା କାପୁର ନୀତି ।
ସଲିଳ ତୀର୍ଥ ମହା ଦ୍ୱୀପ ନିର୍ଜନ
ସେ ତୀର୍ଥେ ପ୍ରକୃତିର ନିତ୍ୟ ମଜ୍ଜନ,
ପ୍ରକୃତି ଶ୍ରୋତା ତହିଁ ବକ୍ତା ସାଗର
ନୀରବ ସାକ୍ଷୀ ସିନା ପର୍ବତ ଶେଖର ।
ଏହି ମଣିଷ ହାତେ ଏ ମଣିଷର
ଅବସ୍ଥା ଶୋଚନୀୟ-ଅଶ୍ରୁ କାତର
ଦେଖି ସଂତ୍ରସ୍ତ କିବା ସଲିଳ ତୀରେ
ସିନ୍ଧୁ ଆଶ୍ରୟ ଦେଇ ଅଛନ୍ତି ଡରେ ।
ନଭ ବିହାରୀ ଯେତେ ବିହଗ କାକ
ଭୟେ କି ଭୁଲିଯାନ୍ତି ସ୍ୱଭାବ-ଡାକ ।
ଅଚଳ ମୌନ ବ୍ରତ ଦୃଢ଼ପାଳନେ
ଦୋଳାୟମାନ ଯେବେ ଶୂନ୍ୟ ଆସନେ ।
ଦେଖି ଏ ମାନବର ନିର୍ଦ୍ଦୟ ନୀତି,
ମାନବ ପ୍ରତି ମାନବର ଅପ୍ରୀତି,
ପ୍ରକୃତି ପଶୁ ପକ୍ଷୀ ହୋଇ ନିରାଶ
ମାନବେ କରୁଛନ୍ତି ଘୃଣା ପ୍ରକାଶ ।
ମଣିଷ ବୁଝୁନାହିଁ ଆହା, ତଥାପି
ନିଷ୍ଠୁର ରକ୍ଷୀ ଜଗିଥାଏ ଅଦ୍ୟାପି,
ଚୋର ସଇନ ସାଜି ଶକ୍ତ ପ୍ରହରୀ
ପାଠଶାଳୀଙ୍କୁ ଜଗେ ଦିବାଶର୍ବରୀ ।

ଏପରି କେତେକାଳ ଅତିବାହିତ,
ସାଗରେ ଯାଇ ମିଶେ ଗିରି ସରିତ,
ସମୁଦ୍ରେ କେତେ ବୀଚି ଜୁଆର ଉଠେ
ସରଣୀ ହୀନଦୀର୍ଘ ବାଲୁକା ତଟେ
ହେ ଦ୍ୱୀପ ପଦ ଚୁମ୍ବି ଫେରେ କଲ୍ଲୋଳ
ଉଠାଏ ସମୀରଣ ତହିଁ ହିଲ୍ଲୋଳ ?
ବୁଦ୍‌ବୁଦ ଛିନ୍ନ କରେ ସଲିଳ ଦୋଳ
ଦ୍ୱୀପଟି ହୁଏ କ୍ଷଣେ ପ୍ରବାଳ ଗୋଳ,
ଏମନ୍ତେ ବହୁଦିନ ହୋଇଲା ଗତ
ଜୀବନେ ନୁହେଁ ଆଶାଙ୍କୁର ଉଦ୍‌ଗତ,
କରନ୍ତି ନାହିଁ ପାଠଶାଳୀ ପରଗତ
ଆତ୍ମା ସେ ଆଉ ମୁକ୍ତ ହୋଇବେ ସତେ ?
ନିର୍ବାସନେ କି ପିବ ଯାବଜ୍ଜୀବନ
ସ୍ୱଦେଶେ ହେବ ନାହିଁ ପ୍ରତ୍ୟାବର୍ତ୍ତନ,
କ୍ଷଣକ ପାଇଁ ଆଉ ଦେଖିବେ ନାହିଁ
ଦୁଇଟି ଆଖି କାହିଁ ବସନ୍ତି ଗୃହୀ ।
କି କରୁଛନ୍ତି ଦୂରେ କୁଟୁମ୍ବ ଯାଉ
ସ୍ୱଜନ ଭଗ୍ନ ସେହି ପାଇକ ଜାତି ।
ପାଇକ ଗ୍ରାମେ ଆସୁଥିବ ବସନ୍ତ
ବସନ୍ତେ ଫୁଟୁଥିବ ଚୂତ ଅନନ୍ତ ।
ଚୂତ ମଞ୍ଜରୀ ଭରା ଷଟ୍‌ପଦେ ମୁକୁର
କଳ ମୁଖର ଗ୍ରାମ ତଟିନୀ କୂଳ,
ହୁଅଇ ବେଳେ ବେଳେ ଇଚ୍ଛା ଏକାନ୍ତ
ବିହଙ୍ଗ ସମ କରି ସେ ଅତିକ୍ରାନ୍ତ,

ସାଗର ଦ୍ୱୀପ ଫିରି ଆସନ୍ତେ ଉଡ଼ି
କୁଟୀରେ କଳ୍ପନରେ ବେଦନା ହୁଡ଼ି,
ହୁଅନ୍ତା ବନ୍ଧୁ ସଙ୍ଗେ ଶୁଭ ମିଳନ
ବିରହ ଶେଷେ କାନ୍ତା ପୁରେ ଗମନ ।
ପାଇକ ଅସ୍ତ୍ର ଶସ୍ତ୍ର ଆଖଡ଼ା ଘରେ
ପ୍ରବେଶ ହୁଅନ୍ତେ ସେ ସଆଡ଼ମ୍ବରେ,
ପଶ୍ଚାତ ଦେଶେ ଧୀରେ ବିଦ୍ରୂପ ହାସେ
ରହିଛି ବାସ୍ତବତା ସ୍ମୃତିବିଳାସେ,
କରଇ ଛୁରାଘାତ ଅତି ବିଷମ
ଦୁର୍ଦ୍ଦାନ୍ତ ପାଠଶାଣୀ, ନିଜର ଭ୍ରମ,
ତାଙ୍କୁ ଯେପରି ଆଣି ଦେଇଛି ଦଣ୍ଡ
ପେଷିଛି ନିର୍ବାସନେ ସମୁଦ୍ର ଗଣ୍ଡ ।
ସେ ପୁଣି ମୁକ୍ତି ଦେବ ବୃଥା ବିଶ୍ୱାସ
ସିଂହ କବଳୁ ଶଶ ପାଏକି ଆଉ,
କିଏ ହେ ଶୁଣେ ବନ୍ଦୀ ଦୁଃଖ ଅସୀମ,
ପଦ୍ମର ପ୍ରାର୍ଥନା କି ଘେନଇ ହିମ ?
ଦ୍ୱୀପ ସର୍ବୋଚ୍ଚ କର୍ମଚାରୀ ନିଷ୍ଠୁର
ହେବେ କି ଆଜି ସତେ କରୁଣାତୁର,
ଯାବଜ୍ଜୀବନ ଦ୍ୱୀପାନ୍ତର ଦହନେ
ଏମନ୍ତ ବହୁଦିନ ବିତେ ବିଜନେ ।
ଦଇବ ବଶେ ଦିନେ ହେଲା ଏମନ୍ତ
ପାଠଶାଣୀଏ ହେଲେ ଦ୍ୱୀପେ ବିଖ୍ୟାତ
ଯମ ପ୍ରତିମ ସେ ଦ୍ୱୀପର ଶାସକ
ବନ୍ଦୀ ପାରୁଶେ ହୋଇଥିଲେ ଯାଚକ

କାହିଁକି ଅବା ସେହୁ ସ୍ୱଭାବେ ସତେ
କାନ୍ଦଇ ଜଣେ କଏ ନିଯୁତି ମତେ ।
ସେ କର୍ମଚାରୀ ପତ୍ନୀଙ୍କର ବ୍ୟବସ୍ଥା
ଗର୍ଭ ଯନ୍ତ୍ରଣା ସାଂଘାତିକ ଅବସ୍ଥା,
ଗର୍ଭବେଦନା ଶୂଳ ହେଲା ବିଷମ
ଶତ ପ୍ରୟୋଗେ ନାହିଁ ତା ଉପଶମ।
ପ୍ରସବ ବେଦନା ତ ମହା ଶୋଚନା
କରି ପାରିବ କଏ ତାର କଳନା ।
ଶ୍ୱେତାଙ୍ଗ ପ୍ରଭୁ ଦେଖି ପତ୍ନୀ ଆରତି
ନିସ୍ତ୍ରାଣ ପ୍ରାଣେ ହେଲେ ଆକୁଳମତି
ଶତ ଔଷଧ ହେଲା ଯହୁଁ ବିଫଳ
ପ୍ରେୟସୀ ପ୍ରାଣ ଘେନି ହେଲେ ବିକଳ ।
ବୁଡ଼ିବ ଆଶାତରୀ ଶୋକ ସାଗରେ
ସ୍ୱାମୀ ପଡ଼ିଯାଏ ଦ୍ୱୀପଖଣ୍ଡରେ,
ଅପ୍ରତ୍ୟାଶିତ ଭାବେ ଏ ଦୁଃଖ ଜାଣି
ବନ୍ଦୀ ସେ ପାଟେଶ୍ୱରୀ ହେଲେ ଅଗ୍ରଣୀ ।
ସେ କର୍ମଚାରୀ ତାଙ୍କୁ ନେଲେ ଡକାଇ
ବାସ ଭବନେ ନିଜେ ବାର୍ତ୍ତା ପଠାଇ ।
ପ୍ରୟୋଗ କରି ଯେବେ ଔଷଧ ଗୁଣୀ
ଆସନ୍ନ ପ୍ରସବାତେ ବଞ୍ଚାଇ ପୁଣି,
କରିଲେ ଚମତ୍କୃତ ସକଳ ଜନେ
ଭାବନା ଜାଗେ କର୍ମଚାରୀଙ୍କ ମନେ,
କୃତଜ୍ଞତାରେ ଭରିଗଲା ମରମ
ପାଟେଶ୍ୱରୀଙ୍କ ପାଇଁ ଚିନ୍ତା ନରମ,

ମମତା ଆକର୍ଷଣେ ହେଲେ ସେ ବଂଧା
ପାଠଶାଣୀଙ୍କ ପଦେ କୃତଜ୍ଞ ସଦା ।
ଏହି ଘଟଣାପରେ ସ୍ୱଜାଣ୍ଟବହ
କରୁଣା ବଗଳିତ ନମ୍ର ହୃଦୟ ।
ଗୁଣୀ ପୁରୁଷ ପାଠଶାଣୀଙ୍କ ପାଇଁ
ମୁକ୍ତି ଆଦେଶ କରଇଲେ ବଧାଇ,
ତୋଷାମଦ ପ୍ରିୟ କି ବିପ୍ଳବୀ ମନ
ଏପରି ଅନୁଗ୍ରହେ ହେବାକୁ ଧନ୍ୟ ?
ଦିଅନ୍ତି ସର୍ତ୍ତ ପାଠଶାଣୀ ଅରୁଣୀ
ଏପରି ଅନୁଗ୍ରହେ ନିଗ୍ରହ ମଣି ।
ମାଗନ୍ତି ସେହୁ ପର ଗୋଟିଏ ଶିର
ଆଉ ଗୋଟିଏ ଭିକ୍ଷା କରୁଣା ଗୀତ ।
ସେ ଶିର ଅଟେ ବାସୁଦେବଙ୍କ ଶିର
ଦ୍ୱିତୀୟ ଭିକ୍ଷା ଅଟେ ଅସ୍ତ୍ର ଭଣ୍ଡାର ।
ଅସମ୍ଭବ ଏ ସର୍ତ୍ତ, ଦାବି ଅଦ୍ଭୁତ
ନିର୍ଭୀକ ଯେଉଁ ଖ୍ୟାତ ପାଇକ ସୁତ ।
ପ୍ରଭୁ ସାହାଯ୍ୟ ସର୍ତ୍ତ କଲେ ବାରଣ
ପାଠଶାଣୀ କରନ୍ତି ଶାସ୍ତି ବରଣ ।
କଲେ ସେ ପ୍ରତ୍ୟାହାର ମୁକ୍ତି ସୁଯୋଗ
ଜୀବନ ପାଇଁ କଲେ ଜୀବନ ଯୋଗ ।
ସେ ଦ୍ୱୀପେ ନିର୍ବାସନେ ଉଦାରପ୍ରାଣ
ମୁକ୍ତି ଅପେକ୍ଷା ତାଙ୍କ ଲକ୍ଷ୍ୟହିଁ ଠାଣ ।
କେଉଁ ବିବିକ୍ତ ଭୂମି ନିର୍ଜନ ଖଣ୍ଡେ
ସତ ସେ ଥାନ୍ତି ନିର୍ବାସନର ଦଣ୍ଡେ ।

କେଉଁ ନିର୍ଜ୍ଜନ କୋଣେ ବୁଲଇଟି ପ୍ରାଣ
ପଡ଼ିଲ୍ଲ ଝରି ଆହା ମହା ନିର୍ବାଣ ।
ଅଜ୍ଞାତ ଅବଖ୍ୟାତ ଅଦୃଷ୍ଟ ସ୍ଥାନେ
ସେ କଏ କାନ୍ଦେ ଆହା କ ବ୍ୟବଧାନେ ।
ଓଡ଼ିଆ ମୁଲ୍କର ପାଇକ ପୁଅ
ମରଣେ ରଚେ ଯେହ୍ନ ଜୀବନ ସୁଅ ।
ନିର୍ଜ୍ଜନ ଦ୍ୱୀପେ ତାର ସରେ ଜୀବନ
ଝୁରିବ ଥିବେ ପ୍ରିୟା ପ୍ରୀତି ସ୍ୱଜନ ।
ସନ୍ଧୀରେ ପଡ଼ୁଥିଲ୍ଲ ସେ ଯବନିକା
ଲିଭିଲ ଧୀରେ ଧୀରେ ଜୀବନ ଶିଖା ।
ବୀର ପୁରୁଷେ ସିନା ବଣ୍ଟେ ଏସନ
ଦେଇନ୍ତ ଜଳାଞ୍ଜଳି ନିଜ ଜୀବନ ।

ସ ମା ପ୍ତ



ମୁଦ୍ରାକର—ଶ୍ରୀ ସାଧୁଚରଣ ପଟ୍ଟନାୟକ, ଓରିଏଣ୍ଟ ପ୍ରେସ, କଟକ ୧୯୫୧

ବସନ୍ତ ଆସେ, ବସନ୍ତ ପୁଣି ଫେରିଯାଏ
ମାତ୍ର
"କହ୍ନି ନୂଆ ବୋହୂ ଅଛୁ କି ତୁମର ଭଉଣୀ ଆଉ"
ରେ
ଚିର ଶାଶ୍ୱତ ବସନ୍ତର ପ୍ରଶ୍ନ ଲକ୍ଷ ପ୍ରାଣରେ
ରହିଯାଏ—ଏ ବସନ୍ତ ଆଉ ଫେରିଯାଏ ନାହିଁ ।

ଏହାର ସନ୍ଧାନ ପାଇବେ, ପଢ଼ନ୍ତୁ—

# ଭୀରୁ ଯୂଥିକା

ବିଦ୍ରୋହୀ ଦେବାକର—( କବିତା )

ଯଦୁମଣି—( ପିଲଙ୍କ ପାଇଁ )

ବନ ମର୍ମର—ଗଳ୍ପଗୁଚ୍ଛ

ରଶ୍ମି—କବିତାଗୁଚ୍ଛ

ପୂର୍ବରାଗ - କାବ୍ୟ ଗୀତିକା